ଲେଖିକା ଓ ପ୍ରକାଶିକା :

ଶ୍ରୀମତୀ ସ୍ନେହଲତା ମହାପାତ୍ର
ବସନ୍ତ ବିହାର, ଟଙ୍କପାଣି ରୋଡ଼
ଭୁବନେଶ୍ୱର - ୨

ମୁଦ୍ରଣ :

ବିବରଣୀ ପ୍ରକାଶନୀ
ଟଙ୍କପାଣି ରୋଡ଼
ଭୁବନେଶ୍ୱର - ୨

ମୂଲ୍ୟ : ୨୫ ଟଙ୍କା (ପଚିଶ ଟଙ୍କା ମାତ୍ର)

ଫେବୃୟାରୀ ୨୧, ୨୦୦୦

# ସମର୍ପଣ

ଜଗତର ଅଧିଷ୍ଠାତ୍ରୀ କରୁଣାମୟୀ ମା ! ମଧୁମୟୀ ଜନନୀ ଗୋ, ତୁମରି ଚରଣ ତଳେ ମୋର କୋଟି ପ୍ରଣାମ ! ତୁମରି ପ୍ରେରଣା, ତୁମରି ଆଶୀର୍ବାଦରେ ଲିଖିତ ଏହି 'ସମର୍ପଣ' ନାଟକଟି ତୁମରି ପାଦପଦ୍ମ ତଳେ ସମର୍ପଣ କଲି । ମା', ତୁମରି ଆଶୀର୍ବାଦରେ ସତ୍ୟ, ଶାନ୍ତି ଓ ଆନନ୍ଦର ଢେଉ ଖେଳିଯାଉ ଏହି ଧରା ପୃଷ୍ଠରେ । ମୋର ସ୍ୱାମୀ ଚିନ୍ତାମଣି ମହାପାତ୍ର, ପୁଅ ସୁବ୍ରତ, ବୋହୂ ଶ୍ରୀପୂର୍ଣ୍ଣା, ନାତୁଣୀ ସୁଶ୍ରୀ ଶାଶ୍ୱତୀ ଏବଂ ପ୍ରଜ୍ଞା ସୁରଭିଙ୍କର ଭବିଷ୍ୟତ ତୁମରି ଚରଣ ତଳେ ସମର୍ପଣ କଲି । ମା', ସେମାନଙ୍କୁ ଆଶୀର୍ବାଦ କର ।

ମା' କୃପାମୟୀ ! ତୁମରି ଯନ୍ତ୍ର ରୂପେ ତୁମରି କାମ ପାଇଁ ମୋର ଜୀବନ ଉତ୍ସର୍ଗୀକୃତ ହେଉ ।

ଚରଣ ସେବିକା
ସ୍ନେହଲତା

ଓଁ ମାଁ

## କିଛି ଅନୁଭୂତି - କିଛି କଥା !!

ଶ୍ରୀମା' ଓ ଶ୍ରୀ ଅରବିନ୍ଦଙ୍କ ଚରଣ କମଳେ କୋଟି ପ୍ରଣାମ ! ଜଗଦ୍ ଜନନୀ ମା'ଙ୍କ ଦୟାରୁ ୧୯୬୬ ମସିହାରେ ନାଟକ 'ସମର୍ପଣ' ଲେଖାଟି ସଂପୂର୍ଣ୍ଣ ହୋଇଥିଲା । ଲେଖାଟି ସାରିବା ପରେ ମଧ ମୁଁ ମଧୁମୟୀ ଶ୍ରୀମା'ଙ୍କୁ ଦେଖିବାର ସୁଯୋଗ ପାଇ ନ ଥିଲି । ୧୯୬୯ ଫେବ୍ରୁୟାରୀ ୨୧ - ମା'ଙ୍କ ଜନ୍ମଦିନର ଦର୍ଶନ ପାଇଁ ମୁଁ ଯାଇ ପାରିଥିଲି ପଣ୍ଡିଚେରୀ ପ୍ରଫେସର ମହାପାତ୍ର ନୀଳମଣି ସାହୁଙ୍କ ପରିବାର ସହିତ । ସାଙ୍ଗରେ ଥିଲା ମୋର ଆଠ ବର୍ଷର ଏକମାତ୍ର ପୁତ୍ର ସୁବ୍ରତ ।

ଭକ୍ତଜନଙ୍କ ସମାବେଶ । ବାଲ୍‌କୋନିରୁ ଦର୍ଶନ ଦେଉଥିଲେ ଜଗତ୍ ଜନନୀ ଶ୍ରୀମା । ଲେଖିଥିବା ନାଟକର ପାଣ୍ଡୁଲିପିଟିକୁ ଦୂରରୁ ଦେଖାଇଲି କରୁଣାମୟୀ ଶ୍ରୀମାଙ୍କୁ । ଭାବିଲି ମା'ଙ୍କ ଆଶୀର୍ବାଦ ଧାରା ଝରିଆସିବ ଏ ନାଟକଟି ପାଇଁ । ଆଖିରେ ମୋର ଉଚ୍ଛୁଳି ଆସୁଥିବ ଆନନ୍ଦାଶ୍ରୁ ।

ଲୋକାରଣ୍ୟ ଭିତରୁ ହଠାତ୍ ମୋ ପାଖରେ ଆସି ଠିଆହେଲେ ଜଣେ ଇଂରେଜ ଭଦ୍ରବ୍ୟକ୍ତି । ସେ ଇଂରାଜୀରେ କହିଲେ - ଆପଣ କଣ ସ୍ନେହଲତା ମହାପାତ୍ର ? ମୁଁ ଉତ୍ତର ଦେଲି 'ହଁ' । ସେ ପୁନର୍ବାର କହିଲେ - ଆପଣ ଗୋଟିଏ ସୁନ୍ଦର ନାଟକ ଲେଖିଛନ୍ତି ? ମୁଁ ପଚାରିଲି - ଆପଣ କିପରି ଜାଣିଲେ ? ମୁଁ ତ ଆପଣଙ୍କୁ ଚିହ୍ନି ନାହିଁ ! ଭଦ୍ରବ୍ୟକ୍ତି ଜଣକ କହିଲେ - 'ମୁଁ କିଛି ଜାଣେ, ମୁଁ କିଛି ଜାଣେ !!' ତା'ପରେ ସେ କେତେବେଳେ ଚାଲିଗଲେ ।

୧୯୭୩ ଜୁଲାଇ ୨୧ରେ ପୁତ୍ର ସୁବ୍ରତର ଜନ୍ମଦିନ ଉପଲକ୍ଷେ ମା'ଙ୍କ ବିଶେଷ ଦର୍ଶନ ପାଇବାର ସୁଯୋଗ ମିଳିଥିଲା । ସ୍ୱାମୀ ଅଧ୍ୟାପକ ଚିନ୍ତାମଣି ମହାପାତ୍ର ଓ ୧୨ ବର୍ଷର ପୁତ୍ର ସୁବ୍ରତ ଆଖିରେ ଆନନ୍ଦାଶ୍ରୁ । ସେଦିନ କରୁଣାମୟୀ ଦିବ୍ୟଜନନୀଙ୍କର ଚରଣ ତଳେ ଲୋଟିଯିବା ପାଇଁ ମୋ ପ୍ରାଣ ବ୍ୟାକୁଳ ହୋଇ ଉଠିଥିଲା । ସେ ମଧୁମୟ ସ୍ପର୍ଶ ଚିର ସ୍ମରଣୀୟ । ମା କୃପାମୟୀ ! ସବୁକିଛି ତୁମରି ଚରଣ ତଳେ ସମର୍ପଣ କଲି । ତୁମେ ଆଶୀର୍ବାଦ କର ।

- ସ୍ନେହଲତା

ପଦେ ଅଧେ :-

ନାଟକ 'ସମର୍ପଣ'ଟି ଲେଖିସାରି ପଣ୍ଡିଚେରୀ ପଠାଇ ଦେଇଥିଲି ୧୯୬୬ ମସିହାରେ ମା'ଙ୍କର ପ୍ରିୟ ପୁତ୍ର ଶ୍ରୀ ମନୋଦ ଦାସଙ୍କ ପାଖକୁ । ସେ ନାଟକଟି ପଢି ବହୁତ ସୁନ୍ଦର ହୋଇଛି ବୋଲି ଲେଖି ପଠାଇଥିଲେ । ତାଙ୍କର ହାତ ଲେଖା ଚିଠି ନକଲ କରି ଏଥିରେ ଦିଆଯାଇଛି ।

ନାଟକ 'ସମର୍ପଣ'ଟି ମାନନୀୟ ପ୍ରପତ୍ତି ମହାଶୟଙ୍କ ପାଖକୁ ପଠାଇଥିଲି । ସେ ପଢି ବହୁତ ଖୁସୀ ହୋଇ ଆଶୀର୍ବାଦ ପଠାଇଥିଲେ ୧୯୭୯ରେ ଏବଂ କଟକରେ ଛପାଇବା ପାଇଁ ପରାମର୍ଶ ଦେଇଥିଲେ । ତାଙ୍କ ଚିଠିର ନକଲ ଛପା ଯାଇଛି ।

ଶ୍ରୀମାଙ୍କର ଶତବାର୍ଷିକୀ ମହୋତ୍ସବ ପାଳନ କରାଯାଇଥିଲା ୧୪.୧୦.୧୯୭୭ରେ । ଚାରି ଦିନ ଧରି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ମା'ଙ୍କ କାର୍ଯ୍ୟକ୍ରମ ଚାଲିଥିଲା । ମୁଁ ବହୁ ଚେଷ୍ଟା କରିଥିଲି ନାଟକଟି ମଞ୍ଚସ୍ଥ କରିବା ପାଇଁ । କିନ୍ତୁ ସଫଳ ହୋଇ ନ ଥିଲି । ହୁଏତ ସମୟ ହୋଇ ନ ଥିଲା ।

ସ୍ୱାମୀ ସାମ୍ବାଦିକତା ଅଧ୍ୟାପକ ଶ୍ରୀଯୁକ୍ତ ଚିନ୍ତାମଣି ମହାପାତ୍ର ନାଟକଟିକୁ ନିଖୁଣ କରିବାରେ ସହଯୋଗ କରିଥିଲେ । ତାଙ୍କର ଚେଷ୍ଟା ଓ ପ୍ରେରଣାରେ ଦୀର୍ଘ ୩୪ ବର୍ଷ ପରେ ନାଟକ 'ସମର୍ପଣ' ମୁଦ୍ରିତ ହୋଇ ପାରିଛି । ମା' ତାଙ୍କୁ ଆଶୀର୍ବାଦ କରନ୍ତୁ । ନାଟକଟି ମଞ୍ଚସ୍ଥ ହୋଇ ପାରିଥିଲା ୧୯୭୯ ଏପ୍ରିଲ୍‌ରେ ବ୍ରହ୍ମପୁରର ପ୍ରକାଶମ ହଲରେ । ଶ୍ରୀଯୁକ୍ତ ପ୍ରପତ୍ତି ମହାଶୟ ୧୯୭୯ରେ ନାଟକଟି ମଞ୍ଚସ୍ଥ କରିବା ପାଇଁ ଆଶୀର୍ବାଦ ପଠାଇଥିଲେ । ଭକ୍ତ ସାଧୁ ଚରଣ ପଟ୍ଟନାୟକ ଓ ଶ୍ରୀ ସୌଭାଗ୍ୟ କୁମାର ଦାସଙ୍କ ଚେଷ୍ଟାରେ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ସାହାଯ୍ୟ ପାଇଁ ନାଟକଟି ମଞ୍ଚସ୍ଥ ହୋଇଥିଲା ମା'ଙ୍କ ଆଶୀର୍ବାଦ ଫଳରେ ।

ମଞ୍ଚ ପରିଚାଳନା କରିଥିଲେ - ଶ୍ରୀଯୁକ୍ତ ସୌଭାଗ୍ୟ କୁମାର ଦାସ, ଶ୍ରୀଯୁକ୍ତ ମଦନ ମିଶ୍ର । ସଂଗୀତ ପରିବେଷଣ କରିଥିଲେ - ଦୂରଦର୍ଶନ କଳାକାର ଶ୍ରୀଯୁକ୍ତ ଶଶାଙ୍କ ଶେଖର ମହାପାତ୍ର, ଅଧ୍ୟାପକ ଗୁରୁଚରଣ ପାତ୍ର । ସାହାଯ୍ୟ ଓ ସହଯୋଗ କରିଥିଲେ - ଅଧ୍ୟାପକ ଡଃ ଦାଶରଥି ମିଶ୍ର, ଅଧ୍ୟାପକ ରବି ମିଶ୍ର ଏବଂ ପୁଅ ସୁବ୍ରତ ମହାପାତ୍ର । ଏଥିପାଇଁ ଉତ୍ସାହିତ କରିଥିଲେ - ସୁରବାଳା ଦାସ (ବିଲି ମାଉସୀ), ଭାଇ ବୈଦ୍ୟନାଥ ରଥ ।

ଶୁଭେଚ୍ଛୁ ବୃନ୍ଦ - ସୁଧାଂଶୁ ଶେଖର ମହାପାତ୍ର, ସୁରମା ଦାସ, ନର୍ମଦା ପାଢୀ, ଡଃ କାହ୍ନୁଚରଣ ମିଶ୍ର, ଭାଇନା ଶିବରାମ ରଥ, ଡଃ ମହାପାତ୍ର ନୀଳମଣି ସାହୁ ।

ତପୋବନ ଓ ଦିବ୍ୟଧାମ ଯୋଗାଶ୍ରମର ଅଧିଷ୍ଠାତ୍ରୀ ମା ଭାବମୟୀ ପରମହଂସୀ - ସେ ମା' - ସେ ଜନନୀ ! ତାଙ୍କରି ଚରଣ ତଳେ କୋଟି ପ୍ରଣାମ ସହ 'ନାଟକ ସମର୍ପଣ'ଟି ପାଇଁ ଆଶୀର୍ବାଦ ଭିକ୍ଷା କରୁଛି ।

- ସ୍ନେହଲତା

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

ଅରୁଣ ଉଦୟ ସମୟ । ପ୍ରାଚୀ ଗଗନରେ ଉଷାର ଅବିର ସଙ୍କେତ । ପଣ୍ଡିଚେରୀ ଆଶ୍ରମର ଏକ ନିରୋଳା କୁଟୀର ପାର୍ଶ୍ୱରେ ସଂଗୀତର ଝଙ୍କାର । କାନ୍ଥର ଉପର ପାର୍ଶ୍ୱରେ ଦେଖାଯାଉଥାଏ ଶ୍ରୀମା' ଓ ଅରବିନ୍ଦଙ୍କର ଫୋଟୋ । ତଳେ ମଞ୍ଜୁ ଓ ମହେଶ । ଏମାନଙ୍କ ପୋଷାକ ସାଦା - ଉଭୟଙ୍କର ମୁଖରେ ଭକ୍ତିର ଭାବ । ପ୍ରାର୍ଥନା ସଂଗୀତ ।

ସଂଗୀତ

ସାଗରର ଚଞ୍ଚଳ ଆଲୋକ ତରଙ୍ଗ,
ତୁଙ୍ଗ ଗିରି ଶିଖରେ ଅବିରର ରଙ୍ଗ,
ପରାଚୀ ଗଗନୁ ଝରେ
ଉଷାର ଅରୁଣିମା -
ସମୀର ସ୍ୱାଗତ କରେ -
ଉଭା ହୁଅ ଆସି ମା ... ଆସ ମା ...
ଅଜ୍ଞାନ ଅମା-ଚକ୍ର ନାଶିନୀ -
ଶୁଭଦେ - ଆଶିଷ ବରଷିଣୀ
ଜନନୀ - ଗୋ ବିଶ୍ୱଜନନୀ !! ॥୧॥

ଶାନ୍ତ ଧରଣୀ ଘେରି ଗଗନ ପ୍ରଶାନ୍ତ -
ଦୀପ୍ତ ମହିମା ତବ, କରେ ଉଦ୍ଭାସିତ
ଏକି ସୁର - ଖେଳିବୁଲେ
ଗଗନେ ପବନେ
ଝଙ୍କାରି ଉଠେ ପ୍ରତି
ଭବନେ ଭୁବନେ ---- ଭବନେ ଭୁବନେ ---
ହୃଦୟ ନୀରବ - ବୀଣା ରାଗିଣୀ
ଶୁଭଦେ - ଆଶିଷ ବରଷିଣୀ
ଜନନୀ - ଗୋ ବିଶ୍ୱଜନନୀ !! ॥୨॥

ମିଥ୍ୟାର ଆବରଣ ଯାଉ ଦୂରେ ଖୋଲି
ସତ୍ୟ ଅନଳ ଶିଖା ଉଠୁ ଗୋ ପ୍ରଜ୍ୱଳି - ଉଠୁ ଗୋ ପ୍ରଜ୍ୱଳି !
ବିଶ୍ୱ ମାନବ ଆଜି -
ଗାଉ ଐକ୍ୟ ତାନେ,
ବନ୍ଦେ, ଜନନୀ ତୋ
କଞ୍ଜ ଚରଣେ -- କଞ୍ଜ ଚରଣେ
ଅଜ୍ଞାନ ଅମାଚକ୍ର ନାଶିନୀ -
ଶୁଭଦେ, ଆଶିଷ ବରଷିଣୀ
ଜନନୀ ଗୋ - ବିଶ୍ୱ ଜନନୀ ॥୩॥

(ମା'ଙ୍କ ଉଦ୍ଦେଶ୍ୟରେ ମଞ୍ଜୁ ଓ ମହେଶଙ୍କ ପ୍ରଣାମ । ଏ ସମୟରେ ପଟ୍ଟ ପତନ)

## ଦ୍ୱିତୀୟ ଦୃଶ୍ୟ

(ବୈଠକ ଘର । ମଞ୍ଜୁ ମା'ଙ୍କର ପ୍ରାର୍ଥନା ସଂଗୀତ ଗୁଣୁଗୁଣୁ କରି ଗାଇ ଘର ସଜାଡୁଛି । ମା'ଙ୍କର ଫୋଟୋରେ ଫୁଲ ଦେଉଛି, ବାହାରେ ବର୍ଷାର ଶବ୍ଦ । ମଝିରେ ମଝିରେ ବିଦ୍ୟୁତ୍‌ର ଝଲକ । ଓଦା ଶୀତୁଆ ପବନ ଝରକା ଦେଇ ବୋହିଆସୁଛି । ଏହି ସମୟରେ ବାହାରୁ ଶୁଣାଗଲା ଥର ଥର ଗଳାରେ ଏକ ବୃଦ୍ଧାର କଣ୍ଠସ୍ୱର ।)

ଭିକାରୁଣୀ : ମାଆ --- କିଏ ଅଛ ମା ! ଏ ବୁଢୀଟାକୁ ଟିକିଏ ଜାଗା ଦିଅ । ଏ' ମା ! ହେ ଜଗନ୍ନାଥ ।

ମଞ୍ଜୁ : (ଶୁଣିବାକୁ ଚେଷ୍ଟା କରି) କିଏ ଡାକୁଛି ବୋଧହୁଏ ? ହଁ ତ - ଏ ଭୋଳା ! ଭୋଳା ----

ଭିକାରୁଣୀ : କିଏ ଅଛ ମା ? --- ଏ ମା --- ଏ ବାପା !

ମଞ୍ଜୁ : ଭୋଳାଟା କୁଆଡ଼େ ଯାଇଛି ନା କ'ଣ ? ହଉ ମୁଁ ଯାଏ, ଦେଖେ । (ଫାଟକ ଖୋଲି ବୃଦ୍ଧାକୁ ନେଇ ଆଗମନ) ଆ, ଭିତରକୁ ଆ, ମାଉସୀ, କ'ଣ ଓଦା ହୋଇଗଲୁ ?

ଭିକାରୁଣୀ : ହଁ ମା ଭିଜି ଗଲି । ଏ ଯେଉଁ ବର୍ଷା !

ମଞ୍ଜୁ : ବର୍ଷାଟାରେ କାହିଁକି ବାହାରି ଥିଲୁ ମାଉସୀ ? .

ଭିକାରୁଣୀ ସବୁ ଏହି ପେଟ ପାଇଁ ମା --- ପାଞ୍ଚ ଦିନ ହେଲା ଖାଇନି । ଜ୍ୱର ଯୋଗୁଁ ବାହାରି ନ ଥିଲି । ଆଜି ଟିକିଏ ଭଲ ଲାଗିବାରୁ ବାହାରି ପଡ଼ିଲି । ଏତେ ବର୍ଷା ହେବ ବୋଲି ଭାବି ନ ଥିଲି ମା' ।

ମଞ୍ଜୁ : ଓହ୍ହୋ, ଲୁଗାଟା ଓଦା ! ରହ ରହ, ମୁଁ ଲୁଗାଟାଏ ଆଣି ଦିଏ ।

ଭିକାରୁଣୀ : ଭଗବାନ ତୋର କାଚ ବଜର କରିଥାଆନ୍ତୁ ମା' (ମୁହଁକୁ ଚାହିଁ) । ତୋରାଣି ମୁନ୍ଦେ ଦିଅନ୍ତୁ ଯଦି, ବଡ଼ ଧରମ କରନ୍ତୁ ଝିଅ । ଭାରି ଶୋଷ ହଉଛି ।

ମଞ୍ଜୁ : ହଉ ବସିଥା, ମୁଁ ଆସେ । (ପ୍ରସ୍ଥାନ)

ଭିକାରୁଣୀ : ହେ ଜଗନ୍ନାଥ ! କେତେଦିନ ଆଉ ଏ କଷ୍ଟ ? (ଟେକି ହୋଇ ବସି ଥୁରୁଥୁରୁ ହେବା । କିଛି ସମୟ ପରେ ଲୁଗା ଧରି ମଞ୍ଜୁର ପ୍ରବେଶ - କାନ୍ଥ ଘଣ୍ଟାରେ ସାଢେ ତିନିଟା ବାଜିଛି...)

ମଞ୍ଜୁ : (ଲୁଗାଟାକୁ ହାତକୁ ବଢାଇ) ନେ ମାଉସୀ, ଲୁଗାଟା ବଦଳାଇ ପକା । ଓଦା ଲୁଗାଟା ବାରନ୍ଦାରେ ଟାଣି ଦେବୁ । ରହ, ମୁଁ ତୋରାଣି ଆଣେ ।

ଭିକାରୁଣୀ : ଠାକୁରେ ତୋର ମଙ୍ଗଳ କରନ୍ତୁ ମା !! (ଲୁଗା ନେଇ ଅନ୍ତରାଳକୁ ଯିବା ଏବଂ କିଛି ସମୟ ପରେ ଆଗମନ । ଫେରିଲା ବେଳକୁ ଛନ୍ଦିମନ୍ଦି ହୋଇ ପଡି ଯିବା - ଏ ସମୟରେ ମଞ୍ଜୁର ଆଗମନ)

ମଞ୍ଜୁ : (ଚଞ୍ଚଳ କଂସାଟା ଥୋଇ) ହାଁ ହାଁ, ପଡ଼ିଗଲୁ ମାଉସୀ ? (ହାତକୁ ଧରି ବସାଇବା ଏବଂ ଲୁଗାଟିକୁ ଭଲ ଭାବରେ ସଜାଡ଼ି ଦେବା) ଖାଇ ଦେ (ପାଖରେ ବସି) ସଞ୍ଜ ପଖାଳ - ଲେମ୍ବୁ ଚିପୁଡ଼ି ଦେଇଛି, ଖାଲି ଭଜା ଟିକିଏ ଥିଲା ।

ଭିକାରୁଣୀ : (ଢାକିଢୁକି ହୋଇ ବସି) କେତେ ମୋ ପାଇଁ ହଇରାଣ ହେଲୁ ଝିଅ ? (ଲୋଭିଲା ଆଖିରେ ଭାତକଂସା ଓ ତରକାରୀ ଗିନା ଆଡ଼କୁ ନିରୀକ୍ଷଣ କରି କଂସା ଟେକିବା ସମୟରେ ହାତ ଥରିଯିବା ଫଳରେ କେତେକ ଭାତ ତଳେ ପଡ଼ିଯିବା) ଆହା ! କଣ - ଟେକି ପାରୁଛି ମା ? ହେଇ ହାତ ଦେଖ - କେତେ ଘା' ହୋଇଛି ।

ମଞ୍ଜୁ : ହଁ ତ ! ଓହୋ !! ଆଛା ହେଉ, ମୁଁ କଂସାଟା ଟେକି ଦେଉଛି, ପିଇଦେ । (ଟେକି ଦେବା) କ'ଣ ଔଷଧ ଲଗାଉଛୁ ମାଉସୀ ? (ଏ ସମୟରେ ଭୋଳାର ପ୍ରବେଶ ଓ ସମସ୍ତ ନିରୀକ୍ଷଣ କରି ପ୍ରସ୍ଥାନ)

ଭିକାରୁଣୀ ଔଷଧ କେଉଁଠୁ ପାଇବି ମା ? (ଗୁଣ୍ଡା ପାଟିକି ନେଇ)

ମଞ୍ଜୁ : ହଉ ଖାଇ ସାର । ମୁଁ ମଲମ ଦେବି, ଭଲ ହୋଇଯିବୁ ।

ଭିକାରୁଣୀ : (ଟିକିଏ ଟିକିଏ ପିଇ ବେକରେ ଟିକିଏ ଆସ୍ତେ ହାତ ମାରି) ଛାତିଟି ପଡ଼ି ଯାଉଥିଲା ମା, ମୋ ଜୀବନ ରଖିଲୁ । ଚୋରାଣି ଭାରି ଭଲ ଲାଗୁଛି ।

ମଞ୍ଜୁ : କ'ଣ ଲୁଣ ଦେବି ?

ଭିକାରୁଣୀ ନାଇଁ, କେତେ ତୋତେ ହଇରାଣ କଲିଣି ।

ମଞ୍ଜୁ ମୁଁ କଣ ତୋ ଝିଅ ନୁହେଁ ମାଉସୀ ?

ଭିକାରୁଣୀ (ଅଟକି ଯାଇ) ଏଁ କଣ କହିଲୁ -- (ଦୀର୍ଘ ନିଃଶ୍ୱାସ ପକାଇ) ଆହା --- ଝିଅ କେଉଁଠୁ ପାଇବି ମା' - ମୁଁ ଏମିତି ନ ଥିଲି ମା' । ମୋର ସମସ୍ତେ ଥିଲେ । (କାନ୍ଦିବା)

ମଞ୍ଜୁ : କଣ, ସବୁ ମରିଗଲେ ?

ଭିକାରୁଣୀ : ମରିଗଲେ ହେଲେ ଜାଣିଥାନ୍ତି ଯମ ନେଇ ଗଲା ବୋଲି (କାନ୍ଦିବା)

ମଞ୍ଜୁ : ହଉ--- କାନ୍ଦ ନା, କାନ୍ଦ ନା, ଖାଇ ଦେ ।

ଭିକାରୁଣୀ : ତୋରି ପରି ଗୋଟିଏ ଚାଉଳରେ ଗଢା ମୋର ଗୋଟିଏ ଝିଅ ଆଉ ଗୋଟିଏ ପୁଅ । ଘର ବାଡ଼ି ସବୁ ଥିଲା ମା । ଝଡ଼ବତାସ ଆସିଲା । କାଳ ନଈ ବଢିରେ ସମସ୍ତେ ଭାସିଗଲେ, ଘରଦ୍ୱାର ସବୁ ଭାସିଗଲା । କାହାକୁ ଆଉ ପାଇଲି ନାହିଁ । ଶେଷକୁ ମୋର ଏଇ ଦଶା ଥିଲା । (କାନ୍ଦିବା)

ମଞ୍ଜୁ : କାନ୍ଦନା, ମାଉସୀ କାନ୍ଦନା । ତୁ ଶ୍ରୀମା'ଙ୍କୁ ଡାକ, ଯଦି କେହି ବଞ୍ଚିଥାନ୍ତି, ତୁ ଫେରି ପାଇବୁ ।

ଭିକାରୁଣୀ : ଶ୍ରୀମା କିଏ ଝିଅ ? ସତରେ କଣ ମୋ ଦୁଃଖ ସିଏ ଶୁଣିବେ ?

ମଞ୍ଜୁ : ସେ ପରା ଜଗତର ମା' - ଯେ ତାଙ୍କୁ ଭକ୍ତିରେ ଡାକେ, ସେ ତାର ଗୁହାରି ଶୁଣନ୍ତି ।

ଭିକାରୁଣୀ : ଆହା ତାଙ୍କର ଦୟା - ହଁ ପଥର ହୋଇ ଗଲିଣି ଝିଅ ! (ଏ ସମୟରେ ଭିକାରୁଣୀ କଂସା ଗୋଟାଇବା ଓ ମଞ୍ଜୁ ତା ହାତରେ ଓ କଂସାରେ ପାଣି ଢାଳି ଦେବା)

ମଞ୍ଜୁ : ଥାଉ, କଂସାଟା ମୁଁ ନେଇ ଯିବି । (କଂସା ନେଇ ଭିତରକୁ ପ୍ରସ୍ଥାନ, ଭିକାରୁଣୀ ମୁହଁ ପୋଛି ସ୍ୱସ୍ତିରେ ନିଃଶ୍ୱାସ ମାରିବା - କିଛି ସମୟ ପରେ ମଞ୍ଜୁ ତୁଳା, ଗରମ ପାଣି ଓ ମଲମ ନେଇ ପ୍ରବେଶ)

ମଞ୍ଜୁ : ନେ, ମଲମ ଆଉ ଗରମ ପାଣି । ଘା'କୁ ସଫାକରି ତୁଳାରେ ପୋଛି ଦେବୁ। ଆଉ ମଲମ ଲଗାଇ ଦେବୁ ।

ଭିକାରୁଣୀ (ନିଜ ଆଖିରୁ ଲୁହ ପୋଛି) ପୁଅକୁ ମୋର ଡାକ୍ତରୀ ପଢାଇବି ବୋଲି ଭାବିଥିଲି ମା । (କାନ୍ଦିବା)

ମଞ୍ଜୁ : ଓଃ ପୁଣି କାନ୍ଦିଲୁ ? ନେ, ଗରମ ପାଣିରେ ଧୋଇ ପକା ।

ଭିକାରୁଣୀ : (ଥର ଥର ହାତରେ ଗରମ ପାଣି ଧରି) ଜୀବନଟା ଏହିପରି ବିତିଗଲାଣି । (ପାଣି ଚହଲି ଯାଇ ଲୁଗାରେ ପଡିବା)

ମଞ୍ଜୁ : ଗଲା, ଗଲା, ଭିଜିଗଲା । ତୁ ପାରିବୁନି, ଆଣ, ମୁଁ ଲଗାଇ ଦେଉଛି । (ଘା' ସବୁ ସଫାକରି ମଲମ ଲଗାଇବା - ଏ ସମୟରେ ଟାକର ଭୋଳା ଆଉ ଶାଶୁ ମେନକାଙ୍କର ଆଗମନ ଏବଂ ସବୁ ନିରୀକ୍ଷଣ କରି ପ୍ରସ୍ଥାନ)

ଭିକାରୁଣୀ : ଥାଉ ଥାଉ, ଏଣିକି ମୁଁ ଲଗାଇ ପାରିବି ଯେ - କେତେ ମୋ ପାଇଁ କଷ୍ଟ ପାଇଲୁ ଝିଅ ।

ମଞ୍ଜୁ : ନେ ଲଗା । ଲଗାଇ ସାରି ଏ ଘରେ ଟିକିଏ ଗଡ଼ି ପଡ଼ିବୁ । ଭାରି କଷ୍ଟ ହେଉଥିବ । ବର୍ଷାଟାରେ କୁଆଡ଼େ ଯିବୁ ?

ଭିକାରୁଣୀ : ନା - ଇଁ, ବାବୁ କଣ କହିବେ । ଟିକିଏ ବର୍ଷା କମିଲେ ମୁଁ ଚାଲିଯିବି, କେତେ ହଇରାଣ କଲି ଝିଅ । ତୋ ଋଣ .......

ମଞ୍ଜୁ : ଓଃ, ସେ କଥା କାହିଁକି ଭାବୁଛୁ ? ତୁ ଏଇଠି ନିଶ୍ଚିନ୍ତରେ ଶୋଇ ପଡ଼ । ଆଜି ରବିବାର, ବାବୁ ଯାଇ କେତେ ରାତିକୁ ଘରକୁ ଫେରିବେ । ହଉ, ତୁ ଶୁଅ । ମୋର ପାଠଚକ୍ର ବେଳ ହୋଇ ଗଲାଣି, ମୁଁ ଆସୁଛି । (ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

ପାଠଚକ୍ର। ମା' ଓ ଅରବିନ୍ଦଙ୍କର ଫୋଟୋ ପୃଷ୍ଠରେ ସଜ୍ଜିତ ଭକ୍ତବୃନ୍ଦଙ୍କର ସମାବେଶ । ମା'ଙ୍କ ସଂଗୀତ ପରିବେଷଣ ।

ମଞ୍ଜୁ ଓ ମମତା ଭକ୍ତିରେ ଗଦ୍‌ଗଦ ହୋଇ ପଡୁଥାନ୍ତି - ମମତାର ବୟସ ୨୦ ବର୍ଷ । ଯୁବତୀ ସୁନ୍ଦରୀ । ମଞ୍ଜୁ ବିବାହିତା ୨୫ ବର୍ଷର ଯୁବତୀ । ଭକ୍ତ ବୃନ୍ଦ ତନ୍ମୟ ହୋଇ ଧ୍ୟାନସ୍ଥ । ସଂଗୀତ ପରେ ଅରଗାନ ବାଜି ଉଠିଲା । ନୀରବ ପ୍ରାର୍ଥନା । ଡାକ୍ତର ମହେନ୍ଦ୍ରବାବୁ ପାଠଚକ୍ରର ପ୍ରେସିଡେଣ୍ଟ୍ ଧୀର ଏବଂ ଶାନ୍ତ ପ୍ରକୃତିର ।)

ଡାଃ ମହେନ୍ଦ୍ର ବାବୁ : ଆଜି ଫେବୃୟାରୀ ୨୧ ଜଗଦ୍‌ଜନନୀ ମା'ଙ୍କର ଜନ୍ମୋତ୍ସବ ପାଳନ କରାଯାଉଛି । ମଧୁମୟୀ କରୁଣାମୟ ଜନନୀ ପୃଥିବୀବାସୀଙ୍କ ମଙ୍ଗଳ ପାଇଁ ଅବତୀର୍ଣ୍ଣା ହୋଇଛନ୍ତି ଏ ଧରାପୃଷ୍ଠରେ ।

ଅତିମାନସ ଶକ୍ତି ଦ୍ୱାରା ପୃଥିବୀବାସୀଙ୍କୁ ରୂପାନ୍ତର କରିବା ସକାଶେ ସେ ଅବତୀର୍ଣ୍ଣା । ବର୍ତ୍ତମାନ ମଧ୍ୟ ଏହି ରୂପାନ୍ତର କ୍ରିୟା ସେ କରି ଚାଲିଛନ୍ତି ସୂକ୍ଷ୍ମଭାବରେ । ମା ଓ ଅରବିନ୍ଦଙ୍କର ଏହି ରୂପାନ୍ତର ଯୋଗ ଅତି ସହଜ । ଏହି ଯୋଗ ସିଦ୍ଧିର ପଥ ପ୍ରଦର୍ଶକ ରୂପେ ମା'ଙ୍କୁ ଗ୍ରହଣ କଲେ, ତାଙ୍କ ନିକଟରେ ନିଜକୁ ସମର୍ପଣ କରିଦେଲେ ଓ ସାଧକର ସାଧନାମାର୍ଗ ବହୁତ ସହଜ ହୋଇଯାଏ ।

ଘର, ପରିବାର, ସମ୍ପତ୍ତି, ସବୁ କିଛି ମା'ଙ୍କ ଚରଣ ତଳେ ସମର୍ପଣ କରି ତାଙ୍କର ଯନ୍ତ୍ର ରୂପେ, ତାଙ୍କର ସେବକ ରୂପେ ନିଜକୁ ମାନିନିଅ । ତୁମେ ଅନୁଭବ କର ମା' ତୁମ ସହିତ ରହି ତୁମର ସମସ୍ତ କାର୍ଯ୍ୟକଳାପ

ଦେଖୁଛନ୍ତି । ତୁମକୁ ରକ୍ଷା କରୁଛନ୍ତି । ଫଳରେ ତୁମର ମନ, ତୁମରି ସମସ୍ତ କାର୍ଯ୍ୟ, ଏକାଗ୍ର ଓ ଶୃଙ୍ଖଳିତ ହୋଇ ପାରିବ । ଏଥିପାଇଁ ଆବଶ୍ୟକ ନିଷ୍ଠା, ଅଭ୍ୟାସ ଓ ନିୟମିତ ମା'ଙ୍କୁ ଧ୍ୟାନ କରିବା ।

ମଞ୍ଜୁ : ଆଚ୍ଛା, ଘର ଓ ପରିବାରର ସମସ୍ତଙ୍କୁ ମା'ଙ୍କ ପାଖରେ ଅର୍ପଣ କରିବାକୁ ଯଦି କେହି ଘରେ ବିରୋଧ କରନ୍ତି ?

୧ମ ବନ୍ଧୁ : ହଁ, ହଁ, ସେ ଏକ ସମସ୍ୟା ।

ଡା. ମହେନ୍ଦ୍ର : (ହସିବା) - ଦୁଇଟି ଜିନିଷ ମନେ ରଖିବା ଆବଶ୍ୟକ । ପ୍ରଥମରେ ଯେତେବେଳେ ଆମେ ପରିବାରର ସମସ୍ତ କିଛି ମା'ଙ୍କୁ ସମର୍ପଣ କରୁ, ଆମେ ବରଂ ପରିବାରର ମଙ୍ଗଳ ଓ ଶୁଭ କାମନା କରିଥାଉ । ତା'ଛଡ଼ା - ମା' ଯଦି ସମସ୍ତ ଦାୟିତ୍ୱ ଗ୍ରହଣ କରନ୍ତି, ସେ ସମସ୍ତଙ୍କର ଯାହା ମଙ୍ଗଳ ତାହାହିଁ ନିଶ୍ଚୟ କରିବେ । ଏଥିରେ ବିରୋଧ କରିବାର କ'ଣ ଅଛି ? ବିରୋଧୀ ଶକ୍ତି ସବୁ ସାଧକଙ୍କୁ ଏଭଳି ସମସ୍ୟାର ସମ୍ମୁଖୀନ କରାଇଥାନ୍ତି । ନିଷ୍ଠାର ସହିତ ମା'ଙ୍କୁ ସମର୍ପଣ କଲେ ସେ ଏ ସବୁର ସମାଧାନ କରି ଦିଅନ୍ତି ।

ମମତା ଆଚ୍ଛା - ଅରବିନ୍ଦ ଓ ଶ୍ରୀମାଙ୍କୁ ପୂଜା କରିବା ଦ୍ୱାରା ସନାତନ ଧର୍ମ, ଜଗନ୍ନାଥ ଓ ଦୁର୍ଗାଙ୍କୁ ଅବମାନନା କରାଯାଉ ନାହିଁ ତ ?

ଡା. ମହେନ୍ଦ୍ର : ହେଃ ହେଃ, ତା କିପରି ହେବ ? ଏକୋଽହଂ ବହୁସ୍ୟାମ୍ । ଭଗବାନ ସର୍ବତ୍ର ବିଦ୍ୟମାନ । ଧର୍ମ କ୍ଷୟ ହୋଇ ଆସିଲେ, ଅବତାର ରୂପେ ପୃଥିବୀ ପୃଷ୍ଠରେ ସେ ଅବତୀର୍ଣ୍ଣ ହୋଇଥାନ୍ତି ବିଭିନ୍ନ ରୂପରେ । ମହାପୁରୁଷମାନେ ସଂସାରରେ ଜନ୍ମଗ୍ରହଣ କରି ଯୁଗୋପଯୋଗୀ ଧର୍ମ ପ୍ରଚାର କରିଥାନ୍ତି କେବଳ ।

ଅରବିନ୍ଦ ଓ ମା ଏହି ଉଦ୍ଦେଶ୍ୟ ନେଇ ଅତିମାନସ ଶକ୍ତିକୁ ପୃଥିବୀରେ ଅବତରଣ କରାଇ ଏହାକୁ କ୍ରିୟାଶୀଳ କରିବା ପାଇଁ ଜନ୍ମଗ୍ରହଣ କରିଛନ୍ତି । ମଣିଷ ଭିତରେ ଥିବା ବଦ୍‌ଗୁଣଗୁଡ଼ିକୁ ପରିବର୍ତ୍ତନ ଅର୍ଥାତ୍ ରୂପାନ୍ତର କରି ଭଗବତ୍ ଉନ୍ମୁଖୀ କରିବା ହିଁ ସେମାନଙ୍କର ଲକ୍ଷ୍ୟ ।

ମଞ୍ଜୁ : ଆପଣ ଯାହା କହିଲେ ତ ନିଜ ପାଇଁ, ଆତ୍ମାର ଉନ୍ନତି ପାଇଁ । ପରିବାର, ଦେଶ, ଜାତି ପାଇଁ ଓ ଗରୀବ ଦୁଃଖୀଙ୍କ ପାଇଁ କ'ଣ ଆମର କିଛି କର୍ତ୍ତବ୍ୟ ନାହିଁ ?

ଡା. ମହେନ୍ଦ୍ର : ଅଛି, ମା ଅଛି ? ସମଗ୍ର ମାନବ ସମାଜ, ସମଗ୍ର ଅଣୁ ପରମାଣୁ, ସବୁ କିଛି ଭଗବାନଙ୍କର ପରିପ୍ରକାଶ ମାତ୍ର । ସେ ଧନୀ ହେଉ, ବା ଗରୀବ ହେଉ - ସମସ୍ତଙ୍କୁ ଆମର ସ୍ନେହ, ସହାନୁଭୂତି ଦେବା ଉଚିତ । ସେମାନଙ୍କୁ ସାହାଯ୍ୟ କରିବା ଆମର କର୍ତ୍ତବ୍ୟ ରହିଛି

ହଉ : ବର୍ତ୍ତମାନ ସମୟ ହୋଇଗଲା । ଅନ୍ତିମ ପ୍ରାର୍ଥନା (ସମସ୍ତେ ନୀରବରେ ଧ୍ୟାନସ୍ଥ ହେବା । ଅରଗାନ୍ ବାଜିବା ଶେଷ । ଅନ୍ଧକାର ହୋଇ କିଛି ସମୟ ପରେ ଆଲୋକିତ ହେବା । କାନ୍ଥ ଘଣ୍ଟାରେ ୬.୪୫ ଡେଇଁ ଯାଇଥାଏ । ଏ ସମୟରେ ମହେଶ ଓ ମୋହନ ପ୍ରବେଶ କଲେ । ବୁଢୀ ତଥାପି ଶୋଇଥାଏ । ଦୁହେଁ ଆସି ସୋଫା ଉପରେ ବସିବା ସମୟରେ ବୁଢୀ ଆଡ଼କୁ ଚାହିଁବା ।)

ମୋହନ : ଆରେ ! ଏଠି କିଏ ଶୋଇଛି ?

ମହେଶ : ହଁ ସତେ ତ ? ଏ - ଭୋଳା ! ଭୋଳା !

ଭୋଳା : (ଭିତରୁ) ହଁ ଯା-ଯାଉଛି ଆଜ୍ଞା (ପହଞ୍ଚି ଧଇଁସଇଁ ହୋଇ) କ - କ - କହନ୍ତୁ (ଖନେଇ କହିବା ତା'ର ଅଭ୍ୟାସ) ।

ମହେଶ : ଆରେ, ଇଏ କିଏ ଶୋଇଛି ?

ଭୋଳା : ଆ.... ଆଜ୍ଞା, ସେଇଟା ପରା - ଭି - ଭି - ଭିକାରୁଣୀଟାଏ । ମା' ଆଣି ତା - ତାକୁ ର - ରଖିଛନ୍ତି ।

ମହେଶ : ଏଥିରୁ ବାଜେ ଲୋକ ଗୁଡ଼ାକୁ ମୋ ବୈଠକ ଘରେ ରଖା ଯାଇଛି, ଦେଖ !

ମୋହନ : (ବ୍ୟଙ୍ଗ ସ୍ୱରରେ) ଘର ଭିତରେ ରଖିଥିଲେ ତ ଭଲ ହୋଇଥାନ୍ତା ! କେଜାଣି କାହିଁକି ମହେଶ ବାବୁ, ଏ ଭିକାରୁଣୀ ଗୁଡ଼ାକୁ ଦେଖିଲେ ମୋତେ ଭାରି ଘୃଣା ଲାଗେ ।

ମହେଶ : ହୁଁ - ଏ - ଏ ବୁଢୀ ଉଠ, ଭୋଳା ! ଭୋଳା !

ଭିକାରୁଣୀ : (ଧଡ଼ ପଡ଼ ହୋଇ ଉଠି) ମୁଁ ଯାଉଛି ବାବୁ (ଶଙ୍କିତ ସ୍ୱରରେ) ଠାକୁରେ ତମର ଉନ୍ନତି କରିଥାନ୍ତୁ । (ଧୀରେ ଧୀରେ ଚାଲିଯିବା)

ଭୋଳା : ଆ - ଆଜ୍ଞା !

ମହେଶ : (ଭିକାରୁଣୀ ଯିବା ଆଡ଼କୁ ଚାହିଁ) ହୁଁ ! (ଭୋଳା ଆଡ଼କୁ ଚାହିଁ) କିରେ, ମୁହଁକୁ ଚାହିଁଛୁ କଣ ? ସିଗାରେଟ୍ ନେଇଆ । ଆଉ ଶୁଣ୍, ମୋର ପାନ ଡିବାଟା ନେଇ ଆସିବୁ । ଶୀଘ୍ର ଯା !

ଭୋଳା : ଆଜ୍ଞା - ଯା - ଯାଉଛି ।

ମୋହନ : ମହେଶ, ତମେ ୱାଇଫ୍‌କୁ ମନା କରୁନାହଁ କାହିଁକି ? ଏ ଭିକାରୀ ଗୁଡ଼ାକର ସ୍ଥାନ୍ ଫାଟକ ବାହାରେ ନା ଏଇ ବୈଠକ ଘର ଭିତରେ ?

ମହେଶ : ଓହୋ । ସିଏ କଣ ବୁଝିବା ଜନ୍ତୁ ? ଭାବିଥିଲି, କିଛି ପଢାଶୁଣା କରିଛି । ସଭ୍ୟତା ଜାଣିଥିବ - କିନ୍ତୁ ଯାହା ଦେଖୁଛି, ତା ଦ୍ୱାରା କିଛି ହେବନି । ବରଂ ଗୋଟିଏ ମଫସଲୀ ଝିଅକୁ ଆଣିଥିଲେ ଭଲ ହୋଇଥାନ୍ତା ।

ମୋହନ : ହଁ, ମାନେ ମାଇ ୱାଇଫ୍ ତ ମଫସଲୀ ଝିଅ । କିନ୍ତୁ ଯାହା କହ ମହେଶ, ମାଇ ୱାଇଫ୍ ଏ ସବୁ କରିବ ନାହିଁ । ଆରେ, ଆରେ ଏ ଗୁଡ଼ାକ ପୁଣି କଣ ?

" " " (ସୋଫା ଉପରୁ ହାତ କାଢି ଝାଡ଼ିବା ସମୟରେ ଭୋଳାର ସିଗାରେଟ୍ ନେଇ ପ୍ରବେଶ । ମୋହନ ବିରକ୍ତି ସହ ଅନ୍ୟ ସୋଫା ଉପରେ ବସିବା ।)

ଭୋଳା : ଆ --- ଆଜ୍ଞା -- ସେଗୁରା ଭା --. ଭାତ --- ।

ମହେଶ : ଭାତ ! ଏଠାକୁ କେମିତି ଆସିଲା ? ପାଜି କେଉଁଠିକାର ?

ଭୋଳା : ଆ --- ଆଜ୍ଞା ---, ମା --- ମା ପରା ସେ ଭିକାରୁଣୀଟା -- ଟାକୁ ଖୋ ---' ଖୋଇ ଦେଉଥିଲେ ! ସେ ଭାତ ଫିଙ୍ଗିଛି ଆ -- ଆଜ୍ଞା । (ପାନ ଓ ସିଗାରେଟ୍ ଟେବୁଲ୍ ଉପରେ ଥୋଇବା)

ମହେଶ : ଦେଖିଲ, ଦେଖିଲ, -- ଓଃ ଆଉ ହେବନି ? ତୋ ମା'କୁ ମୁଁ ଆଉ ପାରିବିନି (ମୋହନ ହାତକୁ ସିଗାରେଟ୍ ବଢାଇବା) ।

ଭୋଳା : ଆଜ୍ଞା - ସେ - ତି - କି ? ସେ ତି - ଡିବାରେ ମଲମ - ଟା ଟା'ର ଯେଉଁ ଘା' ---

ମହେଶ : ଥାଉ, ଥାଉ ମୁଁ ସବୁ ଜାଣିଲିଣି । ଏମିତି ଥରେ ନୁହେଁ - ବହୁ ବାର ହେଲାଣି । ତାକୁ ତୋ ମା'କୁ । ଆଜି ଏହାର ଗୋଟାଏ ନିଷ୍ପତ୍ତି କରିବାକୁ ହେବ ।

ମୋହନ : ହଉ ଭାଇ, ମୁଁ ଆସେ (ମୋହନ୍‌ର ପ୍ରସ୍ଥାନ, ପରେ ମେନକାଙ୍କ ପ୍ରବେଶ)

ଭୋଳା : ହଁ ବାବୁ, ତା - ତା ଦେହଯାକ ଏଡ଼େ ଏଡ଼େ ଘା' । ମା - ମା - ପରା ତା' ଦେହରୁ ପୁ - ପୂଯ କାଢ଼ି, ମଲମ ଲ - ଲଗାଇ ଦେଉଥିଲେ ।

ମେନକା : ହେଃ - ହେଃ - ମୁଁ କହିବାରୁ ମୋତେ କହିଲା, ମା' କହିଛନ୍ତି ଏମାନଙ୍କୁ ସେବା କରିବାକୁ । ଖାଲି ସେତିକି କିରେ ପୁଅ । ତାକୁ କହିଲା, ଏଇଠି ଶୋଇପଡ଼ । ବର୍ଷାଟାରେ କୁଆଡ଼େ ଯିବୁ ?

ମହେଶ : ଛି, ଛି, ଛି, ଏହାର କେମିତି ଏଭଳି ପ୍ରକୃତି ହେଲା କେଜାଣି ! ବାଜେ ଲୋକଗୁଡ଼ାକୁ ମୋ ବୈଠକ ଘରେ ? ଓଃ, ସେ ମୋହନଟା କ'ଣ ଭାବିଥିବ ! (ମୁଣ୍ଡରେ ହାତ ଦେଇ) ହଉ, ଆଜି ଆସୁ, ସବୁ ଠିକ୍ କରି ଦେଉଛି ।

ମେନକା : କହ ନା ପୁଅ, ସେ କଣ ଆଉ ବଂଶର ମର୍ଯ୍ୟାଦା ରଖିଛି ? ନିତି ରବିବାର ସନ୍ଧ୍ୟାରେ ପଞ୍ଚାଏ ଟୋକାଟୋକି ନେଇ ପାଲା ଲାଗିଛି । ମମତାର ଆଇ - ମଣି ମାଉସୀ ବା - କେତେ କଣ କହିଲାଣି । ଯେତେହେଲେ ଭୁଆସୁଣୀ ବୋହୂ ।

ମହେଶ : ତୁ ତାକୁ ମନା କରି ଦେଉନୁ ?

ମେନକା : ମୁଁ କଣ ତାକୁ କଥାରେ ପାରୁଛି କିରେ ବାପା ? କେତେଥର କହିଲିଣି, ଜଗନ୍ନାଥଙ୍କୁ ପୂଜା କର, ଦୁର୍ଗାଙ୍କୁ ପୂଜା କର, ସେଥିରୁ ଫୋଟୋ ଗୁଡ଼ାକୁ ପୂଜା କର ନା । ସେ ମୋ କଥା କଣ ଶୁଣୁଛି ? କହୁଛି ଦୁର୍ଗା ଯିଏ ତା ମା' ସିଏ !

ମହେଶ : ରହ, ଆଜିଠାରୁ ମୁଁ ତା'ର ପାଠଚକ୍ର ଯିବା ବନ୍ଦ କରି ଦେବି । ଏଣିକି ମୁଁ ଆଉ ଚୁପ୍ ହୋଇ ରହି ପାରିବି ନାହିଁ (ବିରକ୍ତ ହୋଇ) । (କାଛରେ ଘଣ୍ଟିଟା ବାଜିବାର ଶୁଣାଗଲା)

ମେନକା : ଦେଖିଲୁ, ଘଡ଼ିରେ ଆସି ସାତଟା ବାଜିଲାଣି । ପାଞ୍ଚୁଟାରୁ ଗଲାଣି ଯେ, ଏ ଯାଏଁ ଦେଖା ନାହିଁ । ମୀନା ବୋଉ କହିଥିଲା - ଆଜି ଏକାଦଶୀଟା ଜଗନ୍ନାଥଙ୍କ ଠିକି ଟିକେ ଯିବାକୁ । କଣ କରିବି, ବୋହୂ ରାଣୀ ତ ଏ ଯାଏଁ ଫେରି ନାହାନ୍ତି ।

ମହେଶ : ତୁ ଯାଉନୁ ? ମୁଁ ତ ଘଣ୍ଟାଏ ଖଣ୍ଡେ ଘରେ ଅଛି । ଯା' ଶୀଘ୍ର ଆସିବୁ ।

ମେନକା : ତୁ ଥିବୁ ? ହେଉ ତେବେ ଯାଉଛି । ମୁଣ୍ଡିଆଟାଏ ମାରି ଫେରି ଆସିବି । ସେଠି ଆଉ କଣ କରିବି କି ? (ପ୍ରସ୍ଥାନ - ଘର ଭିତରେ ଥାଇ ଡାକ ପକାଇଲେ) ଆରେ ଭୋଳା ! ମୋ ଫୁଲତୋଳାଟା କେଉଁଠି ରଖିଲୁ କିରେ ? (ଭୋଳାର - 'ହଁ ମା' କହି ପ୍ରସ୍ଥାନ)

(ମହେଶ ସିଗାରେଟ୍ ଜଳାଇ ଅନ୍ୟମନସ୍କ ଭାବେ ପଦଚାରଣ କରୁଥାଏ । ଏ ସମୟରେ ମେନକା ଫୁଲ ଡାଲା ଧରି ବାହାରି ଆସିଲେ, ହେଇଟି ,ଘର ପ୍ରତି ଆଖି ରଖିଥିବୁ । ଯାଉଛି, ମମତା ଆଇ ଚାଲିଗଲାଣି ନା କଣ । ହୁଁ, ତଥାପି ଆସିନାହିଁ (ବାହାରକୁ ପ୍ରସ୍ଥାନ)

ମହେଶ : (ଅସ୍ଥିର ଭାବେ ପଦଚାରଣ କରୁଥାଏ । ଆଲମାରୀ ଭିତରୁ ଖଣ୍ଡିଏ ବହି କାଢ଼ି ଦେଖିଲା ।) 'ଲୋକ ସାହିତ୍ୟ' (ପାଟି କରି ପଢ଼ି ବିରକ୍ତିର ସହ ଥୋଇଦେଲା । ପ୍ରତି କଥାରେ ତାର ବିରକ୍ତି ବଢ଼ି ଚାଲିଥାଏ । ଖଣ୍ଡିଏ ଖାତା ଉଠାଇ ଦେଖିଲା) 'ଶ୍ରଦ୍ଧାଞ୍ଜଳି' (ପୃଷ୍ଠା ଓଲଟାଇ ପଢ଼ିଲା ସେ) "ହେ ବିଶ୍ୱଜନନୀ ମା ! ମୁଁ ନିଜକୁ, ମୋର ସ୍ୱାମୀଙ୍କୁ, ମୋର ପରିବାରର ସମସ୍ତଙ୍କୁ ଏବଂ ସମସ୍ତ କିଛି ତୁମରି ପାଦ ତଳେ ସମର୍ପଣ କରି ଦେଉଛି । ତୁମେ ମୋତେ ଯେଉଁ ଦିଗରେ ଚଳାଇବ, ମୁଁ ସେହି ଦିଗରେ ଚାଳିତ ହେବି । (ଖାତାଟିକୁ ବନ୍ଦ କରି ଫୋପାଡ଼ି ଦେଲା ମହେଶ) ହୁଁ, ପାଗଳୀ, ପାଗଳୀ ହୋଇଗଲାଣି । ନିଜେ ପାଗଳୀ, ତା ସହିତ ଘରଟାକୁ ପାଗଳ କରି ଛାଡ଼ିବ ? (କାନ୍ଥ ଘଡ଼ିକୁ ଚାହିଁ ପୁଣି ସୋଫା ଉପରେ ବସି ରହିଲା, ପୁଣି ଇତସ୍ତତଃ ଘୂରିବାକୁ ଲାଗିଲା । ଆଖି ଯାଇ ପଡ଼ିଲା କାନ୍ଥରେ ଝୁଲା ହୋଇଥିବା ମା'ଙ୍କର ଫୋଟୋ ଉପରେ । କିଛି ସମୟ ବିରକ୍ତିର ସହ ଯାଇ ଠିଆ ହେଲା ଫୋଟୋ ପାଖରେ ।) ହୁଁ ମା, ମା ବିଶ୍ୱ - ଜନନୀ ! (ଫୁଲମାଳ ଗୁଡ଼ିକ ଟିକି ଟିକି କରିଦେଲା ସେ । ପୁଣି କିଛି ସମୟ ଘୂରି ଆସି ବହିଟାକୁ

ଫୋଟୋ ଆଡ଼କୁ ଲକ୍ଷ୍ୟ କରି ଫୋପାଡ଼ି ଦେଲା ବେଳେ ମଞ୍ଚ ଅନ୍ଧକାର ହୋଇଗଲା । କାଚର ଝଣଝଣ ଶବ୍ଦ । --- ପୁଣି ଆଲୋକ ଜଳି ଉଠିଲା । ଫଟୋର ଫ୍ରେମ୍‌ଟା ଝୁଲି ରହିଛି । ତଳେ କେତେ ଖଣ୍ଡ କାଠ ପଡ଼ିଛି । ମହେଶ ଭ୍ରୂକୁଞ୍ଚନ କରି ଘର ଭିତରେ ସିଗାରେଟ୍ ଜଳାଇ ଲାଗିଛି । ୫/୬ଟା ସିଗାରେଟ୍ ଜଳା ହୋଇ ପଡିଛି । ମହେଶ ଅସ୍ଥିର ହୋଇ ଉଠିଲା । ପୁଣି ପଦଚାରଣ କରିବା ସମୟରେ ବାହାରୁ ଶୁଭିଲା ।)

ମମତା : (ବାହାରୁ) ହଉ, ଭାଉଜ, ମୁଁ ତେବେ କାଲି ଆସିବି ।

ମଞ୍ଜୁ : (ଭିତରକୁ ପଶି ଆସି ଅଧା ଦ୍ୱାର ପାଖରୁ) ହଁ, ହଁ ନିଶ୍ଚୟ ଆସିବ । 'ଲୋକ ସାହିତ୍ୟ' ପଢିବା ।

(ମଞ୍ଜୁ ଅନ୍ୟମନସ୍କ ଭାବରେ ଚାଲି ଯାଉଥିବା ସମୟରେ ମହେଶ ଚେୟାରରେ ବସି ଦୂରରୁ ତାକୁ ଲକ୍ଷ୍ୟ କରୁଥିଲା । ଭିକାରୁଣୀ କଥା ମନେ ପଡ଼ିବାରୁ ମଞ୍ଜୁ ଭିକାରୁଣୀ ଯେଉଁଠାରେ ଶୋଇଥିଲା, ସେ ଆଡ଼କୁ ଲକ୍ଷ୍ୟ କଲା ।)

ମଞ୍ଜୁ : ଚାଲି ଗଲାଣି ବୋଧେ । (ଏ ସମୟରେ ମହେଶକୁ ଦେଖି ପାରି) ଆରେ, ତମେ ? କେତେବେଳେ ଆସିଲ ? ନିଅ ମା'ଙ୍କ ଫୁଲ, ପଣ୍ଡିଚେରୀରୁ ଆସିଥିଲା । ମା'ଙ୍କର ଆଜି ଜନ୍ମଦିନ ଥିଲା ତ !

ମହେଶ : (ହାତ ଆଡ଼େଇ ଦେଇ) ତୁମର ସେ ମା'ଙ୍କ ଫୁଲରେ ମୋର କୌଣସି ଆବଶ୍ୟକତା ନାହିଁ । (ଉଠି ପଡ଼ି) ତା'ଛଡ଼ା ଏ ବିଷୟରେ ମୁଁ ତୁମକୁ କେତେଟା କଥା ସଫା ସଫା କହିଦେବାକୁ ଚାହେଁ । ଦେଖ, ମନୁଷ୍ୟ ହୋଇ ଅନ୍ୟ ଏକ ଜୀବନ୍ତ ମନୁଷ୍ୟର ଏଭଳି ପଦାନତ ହେବା ଦ୍ୱାରା ଯେ ସ୍ୱର୍ଗ ଲାଭ ହୋଇପାରେ, ସେ କଥା ମୋର ବିଶ୍ୱାସଯୋଗ୍ୟ ନୁହେଁ ! ବରଂ ଏଇ ଭଳି ବିଶ୍ୱାସକୁ ମୁଁ ଘୃଣା କରେ ।

ମଞ୍ଜୁ : କିନ୍ତୁ ମା' ତ .....

ମହେଶ : ତୁମ ସହିତ ଯୁକ୍ତି କରିବାକୁ ମୁଁ ଚାହେଁ ନା । ତା'ଛଡ଼ା ତୁମର ଏଣିକି ପ୍ରାନ୍ତିକକୁ ଯିବା ବନ୍ଦ ।

ମଞ୍ଜୁ : କାହିଁକି ? ଆଜି ଟିକେ ଡେରି ହୋଇଗଲା ବୋଲି ....

ମହେଶ ହଁ, ହଁ ଏହା ମୋର ଆଦେଶ ।

ମଞ୍ଜୁ : (ଧୀର ସ୍ୱରରେ) କିନ୍ତୁ ଏଭଳି ଅନ୍ୟାୟ ଆଦେଶର କାରଣ ତ କିଛି ଥାଇ ପାରେ ?

ମହେଶ : ମୁଁ କୌଣସି କୈଫିୟତ୍ ଦେବାକୁ ପ୍ରସ୍ତୁତ ନୁହେଁ । କିନ୍ତୁ ଏହି ବର୍ଷାରେ - ଦିନ ପାଞ୍ଚଟାରେ ଯାଇ ରାତି ଆଠଟା ବେଳେ କୌଣସି ଭଦ୍ରଘରର ଗୃହିଣୀ ଫେରିବ, ଏ କଥା ମୁଁ ପସନ୍ଦ କରି ପାରୁ ନାହିଁ । ଆଉ ଗୋଟାଏ କଥା - ତୁମର କରୁଣା ଦେଖାଇବାର ସୀମା ସମ୍ପର୍କରେ ଜ୍ଞାନ ରହିବା ଦରକାର ।

ମଞ୍ଜୁ : ତୁମେ ଏ ସବୁ କ'ଣ କହୁଛ ? ଆଜି ମା'ଙ୍କ ଜନ୍ମ ଦିନ ଉପଲକ୍ଷେ ....

ମହେଶ : ହଁ, ହଁ ରଖ ତୁମର ସେ କୈଫିୟତ୍ । ମୁଁ ଯାହା କହୁଛି, ଠିକ୍ କହୁଛି । ଭିକାରୁଣୀର ସ୍ଥାନ ଫାଟକ ଆର ପାଖରେ । ଏ ଘର ଭିତରେ ନୁହେଁ । ସେଠାକୁ ଯାଇ ବହୁତ ଶିକ୍ଷା ହୋଇ ଯାଇଛି ।

ମଞ୍ଜୁ ଓ ! ସବୁ ତାହାହେଲେ ସେହି ବୁଢୀକୁ ଆଣିବା ହେତୁ ? ବିଚାରୀ ବର୍ଷାରେ ଆଉ ଯାଇଥାନ୍ତା କୁଆଡ଼େ ? ସେ ମଧ ତ ମଣିଷ !

ମହେଶ : ଆଉ ତୁମର ମନେ ରଖିବା ଉଚିତ ଯେ ମୁଁ ମଧ ମଣିଷ । ଦେବତା ନୁହେଁ । ଆଉ ତୁମର ଏ ମା' - (ଫଟୋ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରିବା ସମୟରେ)

ମଞ୍ଜୁ : ଏ କଣ ? ମା'ଙ୍କର ଫୋଟୋକୁ କିଏ ଏମିତ କଲା ? ଭୋଳା -- ଭୋଳା --- !

ମହେଶ : ଭୋଳାକୁ ଡାକିବାର ଆବଶ୍ୟକତା ନାହିଁ । ଏ ଘରେ ଏଣିକି ସେ ମହିଳାଙ୍କର ଉପାସନା ବନ୍ଦ କର । ହୁଁ ! (କହି କହି ପ୍ରସ୍ଥାନ)

ମଞ୍ଜୁ : ଓଃ, ଏ ତୁମେ କଣ କଲ ? ହେ ମା' (ଭଙ୍ଗା କାଚ ଭିତରୁ ମା'ଙ୍କ ଫୋଟୋ ବାହାର କରି ଏବଂ ଝୁଲି ରହିଥିବା ଫ୍ରେମ୍ ଭିତରେ ତାକୁ ରଖିବାକୁ ଚେଷ୍ଟା କରି) ମା, ମା, ତାଙ୍କୁ କ୍ଷମା କର, କ୍ଷମାକର । ସେ

ତୁମକୁ ବୁଝି ପାରି ନାହାନ୍ତି ମା, ତାଙ୍କୁ ତୁମେ ପରିବର୍ତ୍ତନ କର ମା .. (ଲୁହ ଫୋଟୋ ଉପରେ ପଡ଼ିଲା । ଏ ସମୟରେ ମଞ୍ଚ ଅନ୍ଧକାର, ଯବନିକା ପତନ)

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ରାଜପଥ - ସମୟ ସକାଳ ଦଶଟା । ମନୋଜ ଅନ୍ୟମନସ୍କ ଭାବରେ ରାସ୍ତାରେ ଯାଉଥାନ୍ତି । ହାତରେ ତାଙ୍କର ଅରବିନ୍ଦଙ୍କର କାବ୍ୟ 'ସାବିତ୍ରୀ' ଓ "Mother India" । ଅନ୍ୟ ଦିଗରୁ ମମତା କଲେଜକୁ ଆସୁଥିବାର ଦେଖାଗଲା - ମନସ୍ତତ୍ତ୍ୱ - ସ୍ନାତକୋତ୍ତର ଛାତ୍ରୀ ସେ । ଦୁହିଁଙ୍କର ପରସ୍ପର ସହ ଧକ୍କା ଲାଗିଲା, ମମତା ହାତରୁ ଖସିପଡ଼େ ବହିପତ୍ର । ମନୋଜ ବହିପତ୍ର ତଳୁ ଗୋଟାଇ ମମତାକୁ ଦେବାବେଳେ କହିଲେ ।

ମନୋଜ : ଆଇ ଆମ୍ ସରି !

(ମମତା ମନୋଜଙ୍କୁ ଦେଖି ବିମୁଗ୍ଧା ହୋଇ ନିରୁତ୍ତର ରହିଲା । କିନ୍ତୁ ମୁହଁରେ ଫୁଟି ଉଠୁଥାଏ ସାମାନ୍ୟ ବିରକ୍ତି ସହ ଅନୁରାଗ ।)

ମନୋଜ : (ମନୋଜ ବହି ଦେଉଥିବା ବେଳେ) କ୍ଷମା କରିବେ - ମୋର ଭୁଲ୍ ହୋଇଛି ।

ମମତା : ଭୁଲ୍ । ବୁଦ୍ଧି ବା ବିବେକ ଥିଲେ ଏମିତି ଭୁଲ୍ ହୁଏ ନି ।

ମନୋଜ : ଆପଣ ମୋତେ ଆକ୍ଷେପ କରୁଛନ୍ତି ... (ସାମାନ୍ୟ ହସି) ?

ମମତା : କ୍ୱାଇଟ୍ ନ୍ୟାଚୁରାଲ୍, ଦିନଟାରେ ଆପଣ ରାସ୍ତା ଦେଖି ପାରୁନାହାନ୍ତି । ମୁଁ କହିବି, ଆପଣ ଦୃଷ୍ଟିଶକ୍ତି ହୀନ !

ମନୋଜ : ନାଁ ତା ତ ନୁହେଁ । ମଣିଷର ମନ ଅନେକ ସମୟରେ ତା ଆୟତ୍ତରେ ନ ଥାଏ ।

ମମତା : ମାନେ ?

ମନୋଜ : ମାନେ - ଆପଣ ବିଶ୍ୱାସ କରିବେ କି, ମୁଁ ଯଦି କୁହେ ମୁଁ ଆତ୍ମବିସ୍ମୃତ ଥିଲି !

ମମତା : ହୋଇପାରେ । ସେଇଟା ଆପଣଙ୍କର ବ୍ୟକ୍ତିଗତ କଥା । ତା' ବୋଲି ଲୋକେ ତ ପୁଣି ରାସ୍ତାରେ ଯିବା ଆସିବା କରୁଛନ୍ତି ? ହୁଁଃ

ମନୋଜ : (ଚାଲି ଯାଉଥିଲେ, ପୁନର୍ବାର ବହି ଖଣ୍ଡେ ତଳେ ପଡି ଯାଇଛି ଦେଖି ମନୋଜ ବହିଟି ଗୋଟାଇ ନେଇ ମମତାକୁ ଡାକିଲେ) ଶୁଣିଲେ, ଟିକିଏ ଶୁଣନ୍ତୁ (ମନୋଜ ତରତରରେ ବହି ପୃଷ୍ଠା ଲେଉଟାଇ ମମତାଙ୍କ ନା ପଢି ଡାକିଲେ) ମମତା ପଟ୍ଟନାୟକ, ମିସ୍ ପଟ୍ଟନାୟକ (ମମତା ଫେରି ଆସିବା ।)

ମମତା : ଆପଣ - ମୋତେ ଡାକିଲେ ?

ମନୋଜ (ହସି) ଦେଖନ୍ତୁ ମମତା ଦେବୀ, ଆପଣ ମଧ୍ୟ ଆତ୍ମବିସ୍ମୃତ ହୋଇ ଚାଲି ଯାଉଥିଲେ, ନିଅନ୍ତୁ (ବହି ଦେଖାଇ) ।

ମମତା (ଲାଜେଇ ଗଲା) ଓଃ ! ଆଇ ଆମ୍ ସରି !

ମନୋଜ : ଛାଡ଼ନ୍ତୁ, ସମସ୍ତଙ୍କର ଏମିତି ଭୁଲ୍ ହୋଇଥାଏ । (ମମତା - ଅଳ୍ପ ହସି ଲଜ୍ଜିତ ହୋଇ ଚାଲି ଯାଇଛି । ମନୋଜ ମମତାର ଯିବା ବାଟକୁ ସସ୍ନେହ ଦୃଷ୍ଟିରେ ଚାହିଁ ରହିଥିବା ବେଳେ ମଞ୍ଚ ଅନ୍ଧାର ।) ।

## ଦ୍ୱିତୀୟ ଦୃଶ୍ୟ

(ଠାକୁର ଘର, ଖଟୁଲି ଉପରେ ଶୋଭା ପାଉଛନ୍ତି ରାଧାକୃଷ୍ଣ ଯୁଗଳ ମୂର୍ତ୍ତି, ଶିବ ପାର୍ବତୀଙ୍କର ଛବି, ଜଗନ୍ନାଥଙ୍କ ଛବି । ଟିକିଏ ଦୂରରେ ମା' ଓ ଅରବିନ୍ଦଙ୍କର ଫୋଟୋ । ମମତା ଘର ଭିତରୁ ଫୁଲ ଡାଲା ନେଇ ଆସିଛି । ସବୁ ଠାକୁରଙ୍କୁ ଚନ୍ଦନ ଲଗାଇ ଫୁଲରେ ସଜାଇ ଦେଇଛି, ଧୂପ, ଦୀପ ଜଳେଇଛି । ସ୍ୱତଃ ତା ମୁହଁରୁ ବାହାରି ଆସିଛି ପୂର୍ବ ଦିନ ମନୋଜ ସହିତ ତା'ର ସାକ୍ଷାତର ଶେଷ କେତୋଟି କଥା ।)

ମମତା (ଆତ୍ମବିଭୋର ହୋଇ 'ଆଇ ଆମ୍ ସରି' । ମନୋଜର କଣ୍ଠସ୍ୱର ଯେପରି ଶୂନ୍ୟରେ ଭାସି ଆସିଲା) । ଛାଡ଼ନ୍ତୁ, ସମସ୍ତଙ୍କର ଭୁଲ୍ ହୁଏ ।

ପ୍ରଥମ ସାକ୍ଷାତରେ ଏଇଟା ଅବଶ୍ୟ ଭୁଲ୍ .... । ଏମିତି କଣ ପ୍ରେମ ହୁଏ ? (ହସିବା ମନେ ମନେ)

ମଣି ଦେବୀ : (ମଣି ଦେବୀ ଅନ୍ତରାଳରୁ କହି କହି ଆସିଲେ) ପ୍ରେ ---- ମ ? ହଇଲୋ ଟୋକୀ । ଏ ସକାଳ ପହରୁ କିଏ କାହାକୁ ପ୍ରେମ କରୁଛି ମ ?

ମମତା (ଜିଭ କାମୁଡ଼ି ପକାଇଛି, ପାଟି ଖନି ବାଜିଯାଇଛି) ମୁଁ ମାଈଁ ଲୋ ମା, ମା ତୋର ଏଇ ଯୋଉ ରାଧାଗୋବିନ୍ଦ ନା - ଯାଙ୍କ କଥା କହୁଥିଲି । ସତେ ମ କି ସୁନ୍ଦର ଏ ଯୁଗଳ ମୂର୍ତ୍ତି । ମୁଁ ଠାକୁରଙ୍କୁ ଫୁଲ ଦେଇ ଦେଉଛି । (ମଣି ଦେଇ ବସିଲେ ଓ ଶିବ ସ୍ତୋତ୍ର ଆରମ୍ଭ କଲେ । ମଝିରେ ମଝିରେ ଅଶୁଦ୍ଧ ହେଉଥାଏ - ମମତା ଫୁଲ ଦେଇ ସାରି ଧୂପ ଲଗାଇଲା ?)

ମଣି : ହେ ଶିବାପତି ପାର୍ବତୀ ପତି
ତ୍ରାହି ମାଂ ଭବ ସାଗରଂ
ପଦ୍ମଲୋଚନ ନନ୍ଦୀବାହନ
ଶେଷ ଭୂଷଣ ଭୂଷିତଂ !!

ମମତା (ଏହି ସମୟରେ ମମତା ଆସି ଶ୍ରୀମା'ଙ୍କର ଫୋଟୋ ଏବଂ ଠାକୁର ଖଟୁଲି ନିକଟରେ ଦୁଇଟି ଧୂପ କାଠି ଜଳାଇଲା)

ମଣି : ଭସ୍ମଲେପନ - ଚର୍ମ ଧାରଣ (ହାତ ଯୋଡ଼ି ଆଖି ମୁଦି ପୁଣି ଚାହିଁବା) ଆଲୋ ଏ ମମତା !

ମମତା (ଧୂପକାଠି ସଜାଡୁଥିବା ବେଳେ) କଣ କହୁଛୁ ?

ମଣି : ଚର୍ମ ଧାରଣଂ - ଆଲୋ ମମତା ମୋର ସେ ନାମାବଳିଟା ଦେଲୁ । ଦେହରେ ପକାଇ ନାହିଁ । ମୂର୍ତ୍ତିପାଳନ ପ୍ରାଚିତଂ (ହଲି ହଲି ଗାଇବା)

ମମତା (ଭିତରୁ ନାମାବଳି ଆଣିଦେବା) ନେ' (ଧୂପଦାନୀ ଠିକ୍ କରି ଫୁଲ ହାର ପିନ୍ଧାଇବା ।)

ମଣି : ପଞ୍ଚବାହନଂ କାମମର୍ଦ୍ଦନଂ
ଯୋଗସାଧନଂ ସାଧିତଂ

ଆଲୋ ଏ ମମତା - ହେ ଶିବାପତି ପାବତୀ ପତି -

ମମତା : କ'ଣ କହୁଛୁ ?

ମଣି : ଆଲୋ, ମୋରଂ ସେ ରୁଦ୍ରାକ୍ଷ ମାଳିଟା ଦେଲୁ ।

ପାର୍ବତୀ ପତି ତ୍ରାହି ମାଂ ଭବସାଗରଂ, ତ୍ରାହି ମାଂ ଭବ ସାଗରଂ.....

ମମତା : ନେ, ଏଥର ମୁଁ ଯାଉଛି (ମଣି ଦେଇ ନାମାବଳୀ ଦେହରେ ପକାଇ, ବିଷମାଟା ନେଲେ । ମମତାର ପ୍ରସ୍ଥାନ ।)

ମଣି : ଦେବ କିନ୍ନରଂ - ଏ ମମତା, ମମତା କିଲୋ, ଦେଖ ମ, ଟୋକୀଟା କେମିତି ପଳାଇଲା, ହଇଲୋ ଏ ମମତା ... (ଅନ୍ତରାଳରୁ - ମମତା 'କଣ କହୁଛୁ ।) ରୁଦ୍ରାକ୍ଷ ମାଳିଟା ଦେଲୁ ?

(ହଲି ହଲି) ଦେବ କିନ୍ନର ଦେବ ଗୋଚରଂ
ଭୂଧରାଧର ଭୂଷିତଂ
ଆଦି ଗୋଚର ଜାନକୀବର
ମନ୍ତ୍ର ସାଧନଂ ସାଧିତଂ !
ତ୍ରାହି ମାଂ ଶିବ - ତ୍ରାହି ମାଂ ଶିବ୍ —
ତ୍ରାହି ମାଂ ହର ଭାଷିତଂ
ହେ ଶିବାପତି ପାର୍ବତୀ ପତି -
ତ୍ରାହି ମାଂ ଭବ ସାଗରଂ

ମମତା : (ଆସି) ଏକା ଥରେ କହୁନୁ । ପୂଜା ଜିନିଷ ତୋର ଏତେ ଜାଗାରେ କାହିଁକି ଥୋଉ । ଆଗରୁ ଖୋଜି ଆଣି ବସିଲୁ ନାହିଁ, କୋଉଁଠି ଅଛି, ମୁଁ ପାଉନି ।

ମଣି : ଆଲୋ, ସେ ଘରେ ଥିବ ମ ! ସେ ଘରେ (ମମତାର ପ୍ରସ୍ଥାନ) ମଣି ଦେଇ ଦିଅଁଙ୍କ ପାଖରେ ମୁଣ୍ଡିଆ ମାଇଲେ) ପାର୍ବତୀ ପତି ତ୍ରାହି ମାଂ ଭବ ସାଗରଂ - ଭବ ସାଗରରୁ ତ୍ରାହି କର ହେ ପ୍ରଭୁ - (ମୁଣ୍ଡିଆ ମାରିବା ।)

ମମତା : (ଫେରି ଆସି) କିଲୋ ମାଳି କୋଉଁଠି ରଖିଛୁ ? କାହିଁ ମିଳୁନି ତ ? (ମଣି ଦେଇ ମୁଣ୍ଡିଆ ମାରୁଥିବା ହେତୁ ଶୀଘ୍ର ଉତ୍ତର ଦେଲେ ନାହିଁ ।)

ମଣି : ଆଲୋ ସେଇଠି ମ' ସେଇଠି ।

ମମତା : (ହସି) ବୁଢୀର ଅଭ୍ୟାସ ଗଲା ନାହିଁ । କିଲୋ, ସେଇଠି କହିଲେ କୋଉଠି ?

ମଣି : ଆଲୋ ସେ ଠଣାରେ କି ଆଲମାରି କି ବାକ୍ସରେ ଥିବ ୀ ଦେଖିଲୁ !

ମମତା କହିଲି ପରା - କୋଉଠି ନାହିଁ (ଚାଲି ଗଲା) ।

ମଣି : ଆଉ କୁଆଡ଼େ ଗଲା ମାଁ । କିଏ ନେଇ ଗଲା କିଲୋ । କେତେ କଷ୍ଟରେ ମୁଁ ତାକୁ ଗୋଦାବରୀରୁ ଆଣି ଥିଲି । ନୂଆ ରୁଦ୍ରାକ୍ଷ ମାଳିଟା । (ଆଶ୍ଚର୍ଯ୍ୟ ହୋଇ)

ମମତା : (ହସି ହସି) ଆଲୋ ଏ ବୁଢୀ - ଗୋଦାବରୀରୁ ଆଣିବା ମାଳିଟା ପରା ହାତରେ ଗୁଡ଼ାଇଛୁ ?

ମଣି : (ହାତକୁ ଚାହିଁ) ଆ'ଲୋ - ସତେତ ? ଏଇଠି ଅଛି, ପୋଡ଼ା ମନଟା, କଣ କିଛି ମନେ ପଡୁଛି ? (ରୁଦ୍ରାକ୍ଷ ମାଳ ମୁଣ୍ଡରେ ଲଗାଇ ଜପ କରିବା)

ମମତା : (ଜୋର୍‌ରେ ହସି ହସି) ବୁ ବୁ ....ଢୀ ! କାଖରେ ପୁଅ, ମା ସାଇ ବୁଲୁଛି । ସବୁବେଳେ ଏଇ କଥା - ଆଉ ଥରେ ଡାକେ ତ ? ମୁହଁ ସିଲେଇ କରି ଦେବି । ଅଠର ଥର ଡାକୁଛି (ପ୍ରସ୍ଥାନ) ।

ମେନକା : (ବାହାରରୁ କହି କହି ପ୍ରବେଶ) ପୂଜା ସାରିଲଣି କି ଗୋ ସରଗପଙ୍କ । ମନ୍ଦିରକୁ ଯିବା ପରା ?

ମଣି : (ଜପ କରୁ କରୁ) ଆସ ଗୋ ସରଗପଙ୍କ ଆସ ।

ମେନକା : ଏ ଧୂପ କାଠି କେଉଁଠୁ ଆଣିଲ ମ ସରଗପଙ୍କ, ଭଲ ବାସୁଛି ।

ମଣି : ଏ ମମତା ଆଣି ଥିଲା - ଆଜି ପାଠକୁ ଯାଇଥିଲା ପରା ।

ମେନକା : ମୋ ପାଇଁ ମଗାଇ ଦେବ ତ । ଏ ଭୋଳାଟା କି ଧୂପକାଠି ଗୁଡ଼ାକ ଆଣୁଛି, କିଛି ବାସୁନି ।

ମଣି : ହଉ, ଚାଲ ଯିବା, ହଁ, ଏ ବୋହୂ ! (ଭିତରୁ 'କଣ କହୁଛ ?') ଇହା - ପରିବା କାଟି ସନ୍ତୁଳା ବସାଇ ଦେବୁ । ମୋତେ ଆଉ ବେଳ ନାହିଁ ।

ମୁଁ ବିଅଁଙ୍କ ପାଖକୁ ଯାଉଛି । ଆଜି ଏକାଦଶୀଟା, ଗୋପାଳ ଜୀଉଙ୍କୁ ଦର୍ଶନ କରି ଆସିବି ।

ମେନକା : ଚାଲ, ଚାଲ ଗୋ ସରଗଫଳ । ଶୀଘ୍ର ଆସିବା । ମୋର ପୁଣି କେତେ କାମ ବାକି ଅଛି । ଗଲେ ଚୁଲି ଲଗେଇବି ।

ମଣି : (ପୂଜା ଡାଲା, ଭୋଗ ଇତ୍ୟାଦି ଧରି ଠିଆ ହୋଇ) କାହିଁକି ? କଣ ବୋହୂ ନାହିଁକି ?

ମେନକା : ନ ଥିବେ କାହିଁକି ? ଜାଗାରୁ ଉଠିଲେ ତ !

ମଣି କଣ ଦିନ ହୋଇ ଗଲାଣି କି ? (ଯାଉ ଯାଉ କଥୋପକଥନ)

ମେନକା : କି ଦିନ ବା' ? ଡାକ୍ତରଖାନା ଯାଇଥିଲା ଯେ, ଡାକ୍ତରାଣୀ ଅପରେସନ୍ କରି ମଲା ଛୁଆଟାକୁ ବାହାର କଲା (ଧୀର ସ୍ୱରରେ)

ମଣି : କଣ ହେଲା । ମାସ ହୋଇଥିଲା ପରା ? ଏ କି କଥା ମ ?

ମେନକା : ସବୁ ଭାଗ୍ୟ ଗୋ ସରଗଫଳ । ଯେତେ ମନା କଲେ ମଧ ସେ ସେହି ମା'କୁ ପୂଜା କରିବ । ସେ କାହା କଥା ମାନୁଛି ?

ମଣି : ହଁ ଆଜିକାଲି ବୋହୂଙ୍କୁ କିଏ ପାରିବ ଲୋ ମା ! ଇହା, କଥା ପଦକେ ମଥା ଘୂରାଇ ଦେବେ । (ଚାଲିବା ସମୟରେ ଟିକିଏ ରହି ପୁଣି ଅଗ୍ରସର ହେବା)

ମେନକା : ତାକୁ ପୂଜା କରି ଭଲା କିଛି ଉନ୍ନତି ହେଉଛି ? ପୁଅର କଣ ବଡ଼ ଚାକିରି ହେବାର ଥିଲା ଯେ, ଏ ଯାଏଁ ମିଳିଲା ନାହିଁ । କାଖକୁ ନାହିଁ କି କୋଳକୁ ନାହିଁ । ବୁଝିଲ ସରଗଫଳ (ନରମ ସ୍ୱରରେ), ମହୀର ବୋଲି ଖଣ୍ଡେ ମୋ ଆଖି ଦେଖିଲା ନାହିଁ (ସୁଁ ସୁଁ ହେବା)

ମଣି : ହଁ, ସବୁ କପାଳ ଲିଖନ-କେ କରିବ ଆନ ଗୋ ସରଗଫଳ । ହେଲେ, ଇହା ତମ ବୋହୂକୁ କହୁନା କଳ୍ପବଟ ପାଖରେ ମନାସ କରି ଆସନ୍ତା ।

ମେନକା : ଆହା । ସେ ପୁଣି ଏ କଥା କରିବ । ସେ ତ ମାତିଛି ପାଠଚକ୍ରରେ । ଆଉ, ତା ସାଙ୍ଗକୁ ଏ ଯେଉଁ ତମ ନାତୁଣୀ । ମମତା ମ । କି ଭେଳିକି ଲାଗିଛି କେଜାଣି ! ରାଧାଗୋବିନ୍ଦ, ରାଧାଗୋବିନ୍ଦ !

ମଣି : ହଁ ଯେ, ଆଉ ଗୋଟାଏ କଥା । ଯେତେ ହେଲେ ଝିଅ, ଝିଅ-ବୋହୂ ବୋହୂ । ଇହା, ଝିଅ ଯାହା କରିବେ, ବୋହୂଏ କଣ ସେଇଆ କରିବେ ?

ମେନକା : ଏଇଥି ପାଇଁ କେତେ ମୁଁ କହିଛି ! ବୁଝିଲ ସରଗଫଳ, ସେ ଦିନ ପୁଅ ମୋର ଭଲ କରି ଦି'ପଦ ଶୁଣାଇ ଦେଲା । ଏଣିକି ଟିକିଏ ଯିବା ବନ୍ଦ ହୋଇଛି । ହେଲେ ଘରେ କଣ ସେ ପୂଜା ଛାଡ଼ିଛି ? ହଉ, ଯାହା କରୁଛି କରୁ । ଏ ଯୁଗର ବୋହୂଙ୍କୁ କିଏ କଥା କହିବ ଲୋ ମା !

ମଣି : ଯିବା ବନ୍ଦ କଲ, ଭଲ କଲ । ମୁଁ ଏ ଭିତରେ କେତେ କଥା ଶୁଣିଲିଣି, ଜାଣିଛ ? ଭାବୁଥିଲି କହିବି କହିବି, ହେଲେ ....

ମେନକା : କଣ କହିବ ମ, ମୁଁ କଣ ଜାଣିନି .... ସେଇଥି ପାଇଁ ପରା .........

ମଣି ଇହା କଣଟି, ସ୍ୱାମୀଜୀ ବୋଲାଉଛି ସେ, ଡାକ୍ତର ମହେନ୍ଦ୍ର ବାବୁ ମ । (କାନରେ କହିବା) ଆମ ନାତୁଣୀ କଣ ମାନୁଛି - କି ଭେଳିକି ଲଗେଇ ଦେଇଛି ସେ ଲୋକଟା କେଜାଣି !!

ମେନକା : ହଁ ହଁ, ଯେମିତି ହେବେ, ସେମିତି ଭୋଗିବେ । ଚାଇ ଦେଲ ଗୋ, କଣ ମିଳିବ ଏଥିରୁ। ରାଧାଗୋବିନ୍ଦ, ଶେଷକୁ ଏଇଆ ଶୁଣିବାକୁ ଥିଲା । ରାଧାଗୋବିନ୍ଦ, ରାଧାଗୋବିନ୍ଦ । ଛି.... ଛି....

ମଣି : (ପୂଜା ସମାପନା କରି ପ୍ରଣାମ କରି ଫୁଲ ଡାଲା ହାତରେ ନେଇ) ଚାଲ (ଟିକିଏ ରହି) ଆଲୋ ମାମତା, (ମମତା ଆସିବା) କାହାକୁ ଘରେ ପୂରେଇବୁ ନାହିଁ - କାହିଁକି ନା ଆଜିକାଲି ବେଳକାଳ ଭଲ ନୁହେଁ, ବୁଝିଲୁ । ମୁଁ ମନ୍ଦିରକୁ ଯାଉଛି । ଟିକିଏ ଡେରି ହେବ ।

ମମତା : ଯାଉଛୁ ତ ଠାକୁରଙ୍କ ପାଖକୁ । ସବୁବେଳେ ଖାଲି ମୋରି ଚିନ୍ତା ଯାକୁ ଖାଇ ଯାଉଛି । କେହି ପଶିବେ ନି, ନିଶ୍ଚିନ୍ତ ହୋଇ ଯା - ଠାକୁରଙ୍କୁ ଡାକିବୁ ।

ମଣି : ଦେଖୁଛୁ ଦେଖୁଛୁ ସରଗଫଳ ? ମୁହଁ ଖଣ୍ଡକ କେମିତି ପଙ୍କା ଶାଣଦିଆ । କାହାଘରେ ଏ ଟୋକୀ ପଡ଼ିବ କେଜାଣି । (ଚାଲିଗଲେ । ମମତା

ବହିପତ୍ର ଆଣି କିଛି ସମୟ ଦେଖିଲା, ତା'ପରେ ଘର ଭିତରକୁ ଯିବା ସମୟରେ ଦାଣ୍ଡ ଦୁଆରେ କେହି ଠକ୍ ଠକ୍ କଲା ।)

ମନୋଜ : (ବାହାରୁ) ଟିକିଏ ଶୁଣିବେ !

ମମତା : କିଏ ?

ମନୋଜ : (ବାହାରୁ) ଆଜ୍ଞା ..... ଟିକିଏ ଶୁଣିବେ ...... ।

ମମତା : କିଏ ଡାକୁଛନ୍ତି ?

ମନୋଜ : (ବାହାରୁ) ମୁଁ ପୂର୍ଣ୍ଣାଙ୍ଗ ଶିକ୍ଷା କେନ୍ଦ୍ରରୁ ଆସିଥିଲି ।

ମମତା : ଘର ଭିତରକୁ ଆସନ୍ତୁ । ଦୁଆର ଖୋଲା ଅଛି । (ଆଗେଇ ଯିବାବେଳେ କିଏ ଆସିଛି ଦେଖିବା ପାଇଁ, ମନୋଜକୁ ଦେଖି ଚମକି ଠିଆ ହୋଇଗଲା) ଓଃ ଆ -- ଆପଣ ?

ମନୋଜ : (ପ୍ରବେଶ କରି, ହସି) ନମସ୍କାର ।

ମମତା : ନମସ୍କାର (ପାଟି ଖନି ବାଜି ଯାଇଛି) ! ଆପଣ ଆ'ରେ ବସନ୍ତୁ ନା । (ଛେପ ଢୋକି, ଚୌକି ଦେଇ) ବସନ୍ତୁ ।

(ମନୋଜ ବସିବାକୁ ଉଦ୍ୟତ) ଆପଣ କାହିଁକି ଆସିଥିଲେ କହିଲେ ନାହିଁ ଯେ ।

ମନୋଜ : ଏଇମିତି .... ଆସିଥିଲି - ମାନେ ଆମ ପୂର୍ଣ୍ଣାଙ୍ଗ ଶିକ୍ଷା କେନ୍ଦ୍ର ପାଇଁ - ଆମେ ବିଭିନ୍ନ ଜାଗାରୁ ସାହାଯ୍ୟ ଆଶା କରୁଛୁ ।

ମମତା : ସାହାଯ୍ୟ ? ବାପା ଘରେ ନାହାନ୍ତି - ବୁଢୀ ମା' ବି ମନ୍ଦିରକୁ ଯାଇଛି - ମୁଁ କଣ କେମିତି ଆପଣଙ୍କୁ ସାହାଯ୍ୟ କରି ପାରିବି ?

ମନୋଜ : ବ୍ୟସ୍ତ ହୁଅନ୍ତୁ ନାହିଁ । ପରେ ଦେବେ । (ଯିବାକୁ ଉଦ୍ୟତ)

ମମତା : ବସନ୍ତୁ ନା ..... (ମନୋଜ ବସିବା) ମୁଁ ଶୁଣିଛି - ଆପଣ ପୂର୍ଣ୍ଣାଙ୍ଗ ଶିକ୍ଷା କେନ୍ଦ୍ର ନିଜେ ଚଳାଉଛନ୍ତି ? କାଲି ଆମ ପାଠଚକ୍ରରେ ଆପଣଙ୍କ ବିଷୟରେ ଆଲୋଚନା ହେଉଥିଲା ।

ମନୋଜ : ଆପଣ ଯାହା ଶୁଣିଛନ୍ତି ତାହା ସବୁ ଠିକ୍ ଶୁଣିଛନ୍ତି । ମା'ଙ୍କ ଯାହା ଇଚ୍ଛା - ବାବାଙ୍କର ଆଶୀର୍ବାଦ ।

ମମତା : ଶୁଣନ୍ତୁ ! (ମନୋଜ ବୁଲି ପଡ଼ି ଅନେଇଛନ୍ତି) ଆପଣ ଆଉଥରେ ଆସନ୍ତୁ ! ବାପାଙ୍କୁ ମୁଁ ଜଣାଇ ଆପଣଙ୍କ ସ୍କୁଲକୁ ସାହାଯ୍ୟ କରେଇ ଦେବି ।

ମନୋଜ (ଯିବା ପାଇଁ ଉଦ୍ୟତ, ହସିଲେ ! ହଉ ।

ମମତା : ମନୋଜ ବାବୁ - ମନୋଜ ବାବୁ ! ଖରାପ ଭାବିଲେ କି ?

ମନୋଜ : ନା ! ଏଥିରେ ଭାବିବାର କ'ଣ ଅଛି ? (ହସି) ତା'ହେଲେ ମୁଁ ଆସୁଛି ।

## ପଞ୍ଚମ ଦୃଶ୍ୟ

(ରନ୍ଧା ଘର । ଗୋଟିଏ କୋଣରେ ଷ୍ଟୋଭ୍‌ରେ ପାଣି ବସିଛି । ପରିବା, ଅଁଟା, ପାଣି, ବାସନ, ବେଲଣା, ପିଢା ପ୍ରଭୃତି ରହିଛି । ଅନ୍ୟ କୋଣରେ ଗୋଟିଏ ଛୋଟ ଟେବୁଲ୍ ଉପରେ ଗୋଟିଏ ଧଳା କନା ପଡ଼ିଛି । ତାରି ଉପରେ ଥୁଆ ହୋଇଛି ଶ୍ରୀ ମା'ଙ୍କର ଗୋଟିଏ ଫୋଟୋ । ବୈଠକ ଘରୁ ଆସି ଫୋଟୋଟି ବର୍ତ୍ତମାନ ଏହି ଘରେ ଆଶ୍ରୟ ପାଇଛି । କାଚ ବନ୍ଧା ହୋଇ ନାହିଁ । ପାଖ ଘର ରେଡିଓରୁ ଶୁଣାଗଲା, 'ଶିଳ୍ପୀଙ୍କ କଣ୍ଠରୁ ଆଉ ଗୋଟିଏ ଗୀତ ଶୁଣନ୍ତୁ ।'

(ମା'ଙ୍କ ଫୋଟୋ ପାଖରେ ବସିଛି ମଞ୍ଜୁ । ରେଡ଼ିଓର ସଂଗୀତ ଆଡ଼କୁ ଲକ୍ଷ୍ୟ ରହିଛି । ସମୟେ ସମୟେ ମା'ଙ୍କ ଆଡ଼କୁ ଦୃଷ୍ଟି ଫେରାଇ ନେଉଛି । ଦେଖା ଯାଉଛି, ଯେପରି ଅତିଶୟ ଭାବ ବ୍ୟଥିତ । ସମୟେ ସମୟେ ଗୋଟିଏ ଗୋଟିଏ ଫୁଲ ଫୋଟୋ ତଳେ ସଜାଡୁଛି ସେ, ସମସ୍ତ ଅଙ୍ଗୁଳି ତାର ଅବଶ ହୋଇ ଯାଉଛି । ଗୀତ ଗାଇ ପ୍ରାର୍ଥନା କଲା ମଞ୍ଜୁ ।

ମା, ମା, ମା ---
ଝୁରୁ ମା ଆଶିଷ ରାଜି
ହେ ମଙ୍ଗଳମୟୀ - ହେ କରୁଣାମୟୀ,
ଡାକୁଛି ଆକୁଳେ ଆଜି ।
ପାରି କର ମତେ - ଏ ମାୟା ସାଗରୁ -
ତରୀ ମୋ ଯାଇଛି ଭାଜି,
ଅଗାଧ ସାଗରେ - ଭେଳା ଧରି ମୁହିଁ -
ପାଉ ନାହିଁ ତଟେ ଖୋଜି,
ଡାକୁଛି ଆକୁଳେ ଆଜି - ହେ ... ।୧।

ହୃଦୟ ମୁକୁରେ -- ଘନ ଅନ୍ଧକାରେ
ପଥହରା ମୁଁ ଗୋ ଆଜି,
ଚକ୍ଷୁ ମୋ ନାହିଁ - ଅନ୍ଧ ମୁଁ ହୋଇ
ଅଶ୍ରୁ ମୋ ଯାଇଛି ହଜି,
ଡାକୁଛି ଆକୁଳେ ଆଜି ... ।।୨।।

ତୁମ ନାମ ଜପିବାକୁ ନାହିଁ ଶକ୍ତି
କଣ୍ଠ ମୋ ଗଲା ଭାଜି,
ମନର ବୀଣା ମୋ ବେସୁରା ହୋଇଛି -
ସୁର ମୋ ଯାଇଛି ହଜି !
ଡାକୁଛି ଆକୁଳେ ଆଜି ......
ଝୁରୁ ମା ଆଶିଷ ଭାଜି -
ହେ ମଙ୍ଗଳମୟୀ, ହେ କରୁଣାମୟୀ
ଡାକୁଛି ଆକୁଳେ ଆଜି ।।୩।।

ମା--ମା --ମା ଗୋ ମା--- ମାଆ-----

(ମଞ୍ଜୁ ଆଖିରୁ ଲୁହ ପୋଛିବା ଓ'ମା'ଙ୍କ ଚରଣ ତଳୁ ଫୁଲ ଗୋଟାଇବା)

| | |
|---|---|
| ମଞ୍ଜୁ | ମା', ତୁମେ ମୋତେ ନେଇ ଯାଅ, ମା, ତୁମେ ମୋତେ ନେଇ ଯାଅ ଏ ସଂସାରରୁ !! |
| ମମତା | (କହି କହି ପ୍ରବେଶ) ଭାରି ସୁନ୍ଦର ଗୀତଟିଏ ଗାଇଲ୍, ନାଂ ଭାଉଜ ? ଆରେ (ପାଖକୁ ଆସି ଉଠାଇବା) ତୁମେ କାନ୍ଦୁଛ ଭାଉଜ ? ଛି, ମୋ ରାଣ, କାନ୍ଦନି ! |
| ମଞ୍ଜୁ | (ଲୁହ ପୋଛି) କାନ୍ଦିବା ପାଇଁ ତ ମା' ଏହା କରିଛନ୍ତି । |
| ମମତା | ଛି, ଭାଉଜ, ତୁମେ ଅଧୈର୍ଯ୍ୟ ହୁଅନି । ମଣିଷ ଦୁନିଆରେ କ'ଣ ସମସ୍ତଙ୍କୁ ଖୁସି କରି ପାରେ ? ନା ଯାହା ଚାହେଁ ସବୁ ପାଏ ? |
| ମଞ୍ଜୁ | ମୁଁ ତ ନିଜ ସ୍ୱାର୍ଥ ପାଇଁ ଚାହିଁ ନ ଥିଲି । ସମସ୍ତଙ୍କ ମନରେ କେତେ ଆଶା, କେତେ ସରାଗ । ସବୁ ନଷ୍ଟ ହୋଇ ଗଲା । ଆଉ ସେଥିପାଇଁ ମୋତେ କେତେ କଥା ଶୁଣିବାକୁ ହେଉଛି । (ପୁଣି କାନ୍ଦିବାକୁ ଆରମ୍ଭ କଲା ।) |
| ମମତା | ତୁମେ ଏମିତି କାନ୍ଦିଲେ କେମିତି ହେବ, କହିଲ ଭାଉଜ ? |
| ମଞ୍ଜୁ | ଏତିକିରେ ମୋର ନିନ୍ଦା ଶେଷ ହୋଇ ନି ମମତା । |
| ମମତା | ଛି, ଭାଉଜ, ଲୋକେ ବହୁତ କିଛି କହିପାରନ୍ତି । ତୁମେ ମା'ଙ୍କ ଉପରେ ସେସବୁ କଥା ଛାଡ଼ିଦିଅ । ମା' ବୁଝିବେ । ସେ ତୁମକୁ ସହ୍ୟ କରିବା ପାଇଁ ଶକ୍ତି ଦେବେ । |
| ମଞ୍ଜୁ | ସବୁ ତ ବହୁତ ଆଗରୁ ମା'ଙ୍କ ଚରଣ ତଳେ ଅର୍ପଣ କରି ଦେଇଛି । କିନ୍ତୁ ଲୋକଙ୍କ ଠାରୁ କେତେ ଆକ୍ଷେପ ! ମୋର ଆଉ ଧୈର୍ଯ୍ୟ ରହୁନାହିଁ ମମତା ! ମୁଁ ପାରୁନି । |
| ମମତା | ତୁମେ ମୋତେ କେତେ ଉପଦେଶ ଦେଇଛ, ଭାଉଜ । ସତରେ କ'ଣ ତୁମର କିଛି ମନେ ନାହିଁ ? ଏହି ଦୁଃଖ ଝଞ୍ଜା ସବୁ ହେଉଛି ମା'ଙ୍କ ପରୀକ୍ଷା । ଏଥିରୁ ଧୈର୍ଯ୍ୟ ଓ ସାହସ ରକ୍ଷା କରି ଉତ୍ତୀର୍ଣ୍ଣ ହେଲେ ମା' ଖୁସୀ ହୁଅନ୍ତି । ସେ ମଧ ସହାୟ ହୁଅନ୍ତି । |
| | (ମଞ୍ଜୁ ନୀରବ ରହିବା) |

ତୁମେ କହିଥିଲ - ମା' ହେଉଛନ୍ତି ଅସୀମ କରୁଣାମୟୀ । ସେ କେବେ ନିଜ ସନ୍ତାନର ଅମଙ୍ଗଳ କରି ପାରନ୍ତି ? ସେ ଯାହା କରାନ୍ତି, ତାହା ଆମର ମଙ୍ଗଳ ପାଇଁ ।

ମେନକା : (ନେପଥ୍ୟେ) ଆଲୋ ଏ ମମତା ! କଣ ସେଇଠି ବସି ଚୁପୁଚୁପୁ ହେଉ ଥିବୁ ନା ଘରକୁ ଯିବୁ ? କେତେବେଳୁ ପରା ତୋର ମା' ଡକାଇ ପଠାଇଛନ୍ତି ।

ମମତା : (ଉଚ୍ଚ ସ୍ୱରରେ) ହଁ - ହଁ ଯାଉଛି ମାଉସୀ ! (ନିମ୍ନ ସ୍ୱରରେ) ଭାଉଜଙ୍କ ସାଙ୍ଗରେ ଟିକିଏ କଥାବାର୍ତ୍ତା ହେଲେ ମଧ ଯାଙ୍କର ଦେହ ସହୁନି । ହଉ, ଯାଉଛି ଭାଉଜ । ତୁମେ ଜମା ବ୍ୟସ୍ତ ହେବ ନାହିଁ । ଦେଖିବ, ଶେଷରେ ତୁମର ଜୟ ନିଶ୍ଚୟ ହେବ । ମା' ତୁମର ମନରେ ଅସୀମ ଶକ୍ତି ଦିଅନ୍ତୁ । (ପ୍ରସ୍ଥାନ । ମଞ୍ଜୁ ଦୀର୍ଘନିଃଶ୍ୱାସ ପକାଇ ମମତା ଚାଲି ଯାଉଥିବା ଆଡ଼କୁ ଚାହିଁ ଲୁହ ପୋଛିବା ଏବଂ ଷ୍ଟୋଭ୍ ଆଡ଼କୁ ଦୃଷ୍ଟି ଫେରାଇ ଆଣିବା)

ଭୋଳା : (ପ୍ରବେଶ କରି) ହେଇଟି ମା - ଆ-ଆ-ଆଳୁ କିଲେ ଟଙ୍କାଏ, କା-କା-କାଙ୍କଡ଼ କିଲୋ ତିନି ଟଙ୍କା । ପା-ପାଏ ଆଣିଲି । ଲେ-ଲେ-ଲେମ୍ବୁ ଗୋଟାକୁ ପ-ପନ୍ଦର ପଇସା । ହେଇ ମା ରହିଲା ।

(କୌଣସି ଉତ୍ତର ନ ପାଇ ଦେଖିଲା - ମଞ୍ଜୁ ଲୁହ ଲୁଚାଇ ନେଉଛି ।) ତୁ-ତୁମେ କାନ୍ଦୁଛ ମା ? ହଁ ମା, ମୁ ସବୁ ବୁ-ବୁଝି ପାରିଛି । ତୁ-ତୁମର କିଛି ଦୋ-ଦୋଷ ନାହିଁ ମା । ସବୁ ଭା-ଭାଗ୍ୟ କଥା - ତୁ-ତୁମେ କା-କାନ୍ଦନି ମା । ପୁଅ ... ଝି.ଝିଅ କ.କଣ ହାତର କଥା ! ଭ-ଭଗବାନ ପୁଣି ଦେ-ଦେବେ ଯେ, ତୁମେ କା-କାନ୍ଦନି ମା ।

ମଞ୍ଜୁ : ନାହିଁରେ କାନ୍ଦିବି କାହିଁକି ।

ଭୋଳା : (ଚାଲି ଯାଉଥିଲା - ଫେରି) ଗୋଟାଏ କଥା ମା ! ଚା-ଚା-ଚାକିରି ରଖିବାକୁ ସିନା ମୁଁ ବୁଢୀମା'ଙ୍କ ସାଙ୍ଗରେ ମିଶି କଥା ଦୁଇଟା କହି ପ-ପ-ପକାଏ । ମୋ-ମୋ-ଦୋଷ ଧରିବନି ମା । କେତେ ବାବୁ ଘ-ଘ-ଘରେ ତ ମାଙ୍କର ଫୋଟୋ ଅଛି । ସେମାନେ ତ ଉ-ଉ-ଉପକାର ପାଉଛନ୍ତି ବୋଲି ପୂ-ପୂ-ପୂଜା କରୁଛନ୍ତି । ସେ ତୁମକୁ ନିଶ୍ଚୟ ସାହା

ହେବେ । ମୁଁ-ମୁଁ ଆଗ ଯେ-ଯେ-ଯେଉଁଠି ଥିଲି, ସେ-ସେ-ସେଇଠି ଏଇ ମା-ମା-ମା'ଙ୍କର ପୂ-ପୂ-ପୂଜା ହେଉଥିଲା । ସେ ମା ତୁମକୁ ନିଶ୍ଚୟ ସାହା ହେବେ । ଦେଖିବ ମା । (ପ୍ରସ୍ଥାନ)

(ମଞ୍ଜୁ ଚାଉଳ ପକାଇବା ସମୟରେ ମଞ୍ଚ ଅନ୍ଧକାର ହୋଇଯିବା -ପୁଣି ଆଲୋକ ଆସିଲା ବେଳକୁ ଦେଖାଗଲା, ରୋଷେଇ ଘର । ରାତି ହୋଇଗଲାଣି । ଆଲୁଅ ଜଳୁଛି । ଷ୍ଟୋଭ୍‌ରେ ଡାଲି ବସିଛି । ମଞ୍ଜୁ ଚୁପ୍ ହୋଇ ଚିନ୍ତିତ ମନରେ ବସିଛି ।)

ମେନକା : (ଡାକି ହାକି ଚରଚର ହୋଇ ଆସିବା) ହଇଲୋ ଏ ବୋହୂ ସେଇଠି କଣ ହେଉଛି ? ଡାଲି ପୋଡ଼ି ସାଇକୁ ଗନ୍ଧ ଛୁଟିଲାଣି, ଜଣା ପଡୁନି ? ଡାଲି କିଲୋ ଆସି ଚାରି ଟଙ୍କା ହେଲାଣି ! ଆ.... ଆରେ - ଏ ଘରେ ଆଉ ଲକ୍ଷ୍ମୀ ରହିବେ ନାହିଁ ଲୋ ମା ! (ମଞ୍ଜୁ ଧଡ଼ପଡ଼ ହୋଇ ଉଠି ଡାଲିରେ ପାଣି ଦେବା ଓ ଘାଣ୍ଟିବା ସମୟରେ ଆଖିରୁ ଲୁହ ପୋଛିବା)

ମେନକା : ଯେତେ କାନ୍ଦିଲେ କଣ ହେବ ! ମୁଁ କେତେ ଥର କହିଲିଣି ସେହି ଫୋଟୋ ପୂଜା ଛାଡ଼ । ମନ୍ଦିର ଯା, ଭଲା, ଦୁର୍ଗାଙ୍କୁ ପୂଜା କର । ରାଧାଗୋବିନ୍ଦ, ରାଧାଗୋବିନ୍ଦ !

(ମଞ୍ଜୁ ନୀରବ ହୋଇ ମୁଣ୍ଡ ପୋତିବା, ମେନକା ତମତମ ହୋଇ ବାହାରି ଯାଉଥିବା ବେଳେ ମହେଶର ପ୍ରବେଶ)

ମହେଶ : ଏ ବୋଉ, ଶୁଣିଲୁଣି । ମୋର ଆଇ.ଏ.ଏସ୍. ପୋଷ୍ଟିଙ୍ଗ୍ ଓଡ଼ିଶାରେ ହୋଇଛି । ଆଜି ତାର ଆସିଛି । ଏଇ କଟକରେ ହିଁ ରହିବାକୁ ହେବ ।

ମେନକା : ସତେ କିରେ ପୁଅ ? ଯାହା ହେଉ ଗୋପାଳ ଭରସା । ଠାକୁରେ ମୋର ଗୁହାରି ଶୁଣିଲେ । (ମଞ୍ଜୁ ନୀରବରେ ନିକଟରେ ଥିବା ମା'ଙ୍କର ଫୋଟୋ ତଳେ ମୁଣ୍ଡିଆ ମାରିଲା । ମେନକା ପୁଅକୁ ତାହା ଦେଖାଇ ଦେଇ କହିଲେ) ଦେଖ୍ ଦେଖ୍ !

ମହେଶ : (ଟିକିଏ ଅପେକ୍ଷା କରି) ମଞ୍ଜୁ ! ତୁମର ବ୍ୟବହାରରେ ବାସ୍ତବିକ୍ ମୁଁ ଲଜ୍ଜିତ । ଏସବୁ କରିବାର ଉଦ୍ଦେଶ୍ୟ କଣ କୁହ ତ ?

ମଞ୍ଜୁ : (ଅଳ୍ପ ହସି) କାହିଁ କିଛି କରୁନି ତ ! ତୁମର କଟକରେ ପୋଷ୍ଟିଂ ଖବର ପାଇ ମୁଁ ଆନନ୍ଦରେ ମା'ଙ୍କ ପାଖରେ କୃତଜ୍ଞତା ଜଣାଉଥିଲି ।

ମେନକା : ଉ'ହୁ ! ମୋତେ ଏଥିରୁ କଣ ମିଳିବ ? ଆସାମରେ ନରହି ମୋ ପାଖରେ ତ ରହିଲା । ପ୍ରଭୁ ଭରସା ! ଯାଏଁ, ଗୋପାଳଙ୍କୁ ଯାଚିଥିଲି, ରାଧାଗୋବିନ୍ଦ, ରାଧାଗୋବିନ୍ଦ । (ପ୍ରସ୍ଥାନ)

ମହେଶ : ମାନେ ? ତୁମେ କହିବାକୁ ଚାହୁଁ, ତୁମ ମା'ଙ୍କ ଯୋଗୁଁ ଏଇ କଟକରେ ମୋର ପୋଷ୍ଟିଙ୍ଗ୍ ହେଲା ।

ମଞ୍ଜୁ : (ପାଖେଇ ଆସି) ନାଇଁ ମ ! ମୁଁ କଣ ସେଇଆ କହୁଛି ? ଏହା ବୋଲି ମା'ଙ୍କ ପାଖରେ ଟିକିଏ କୃତଜ୍ଞତା ଜଣାଇବି ନାହିଁ ?

ମହେଶ : କିନ୍ତୁ କାହିଁକି ? ସେ ତୁମର କଣ କରିଛନ୍ତି ? ଗୋଟାଏ ମଣିଷ ଗୋଟାଏ ମଣିଷର କଣ କରି ପାରେ ?

ମଞ୍ଜୁ : ଛିଃ, ସେପରି କୁହନାହିଁ । ରାମଚନ୍ଦ୍ର, କୃଷ୍ଣ ଏମାନେ ତ ଦିନେ ମଣିଷ ଥିଲେ ? ଯେଉଁମାନଙ୍କ ପାଖରେ ଐଶ୍ୱରିକ୍ ଶକ୍ତି ଅଛି, ସେ ହିଁ ଦେବତା ।

ମହେଶ : ଭୁଲ୍ କଥା, ତୁମ ମା'ଙ୍କ ପାଖରେ ଯେ ସେହି ପ୍ରକାର ଐଶ୍ୱରିକ ଶକ୍ତି ଥାଇ ପାରେ, ମୋର ବିଶ୍ୱାସ ହୁଏ ନାହିଁ । କିଛି ପ୍ରମାଣ ଦେଇ ପାରିବ ? (ମଞ୍ଜୁ କଣ କହିବାକୁ ଯାଉ ନୀରବ ହୋଇଗଲା ଓ ଅଟା ଚକଟି ବସିଲା । କିଛି ସମୟ ପରେ କହିଲା ।)

ମଞ୍ଜୁ : ଶ୍ରୀ ମା କହିଛନ୍ତି - "ପ୍ରତ୍ୟେକ କାର୍ଯ୍ୟ ନିଖୁଣ ଭାବରେ କରିବାକୁ ଚେଷ୍ଟା କରିବା ହିଁ ଭଗବତ୍ ପ୍ରାପ୍ତି ।" (ରୁଟି ବେଲିବା) କର୍ତ୍ତବ୍ୟ କରିବା ପାଇଁ ସେ ଚ୍ଚ ମନା କରି ନାହାନ୍ତି ?

ମହେଶ : ଓହୋ, ସେଇ ଶ୍ରୀମା ! ସେହି ଭଗବତ୍ ପ୍ରାପ୍ତି । ସେ ସବୁ ଛାଡ଼ି ତୁମେ କଣ ସହଜ ନାରୀ ହୋଇ ପାରିବ ନି ମଞ୍ଜୁ ? କି ଲାଭ ଆଶାରେ ତୁମେ ଦିନ ଦିନ ଧରି ସେହି ଫୋଟୋ ପାଖରେ ଲୁହ ଢାଳ କୁହ ତ - କୁହ କିଛି ପାଇଛ ? ମୁଁ କହୁଛି ଏଇ ନିର୍ବୋଧତା ଛାଡ଼ - ନିଜ ବ୍ୟକ୍ତିତ୍ୱ ଉପରେ ବିଶ୍ୱାସ କରି ଏ ଦାସତ୍ୱକୁ ଅସ୍ୱୀକାର କର । ନଚେତ୍ ସେ

ଆଖିର ଲୁହ ଚିର ଦିନ ଧରି ବନ୍ଦ ହୋଇ ପାରିବ ନାହିଁ । (ପ୍ରସ୍ଥାନ)

(ମଞ୍ଜୁର ଆଖି ପୁଣି ଛଳଛଳ ହୋଇ ଆସିଲା । ନୀରବରେ ସେ ପୁଣି ଶ୍ରୀମା'ଙ୍କର ଫୋଟୋ ଆଡ଼କୁ ଅନାଇ ରୁଟି ବେଲ୍ଲି ଲାଗିଲା । ମଞ୍ଚ ଅନ୍ଧକାର ।)

## ଚତୁର୍ଥ ଦୃଶ୍ୟ

(ରାସ୍ତା ଉପରେ ବସି ମଧୁ ଓ ଭୋଲା କଳି କରୁଛନ୍ତି ।)

ମଧୁ : ହଇ ରେ କଣ କହିଲୁ, ନୁହନ୍ତି ?

ଭୋଲା : ଧେତ୍, ଆରେ ମା-ମା ଆଗ, ନା ବାପା ଆଗ ରେ । ଆମେ ମାକୁ ଚିହ୍ନିଲେ ସି-ସି-ସିନା ପରେ ବା-ବା-ବାପାକୁ ଚିହ୍ନିବ ? ମୁଁ-ମୁଁ-ମୁଁ କହୁଛି, ମା ବଡ଼ ।

ମଧୁ : କିରେ, ତାଙ୍କ ନାଁ ପରା ଦୀନବନ୍ଧୁ, ଜଗନ୍ନାଥ । ସେ ପରା ସମସ୍ତଙ୍କୁ ପଢ଼ି ଦେଉଛନ୍ତି ! ଓଲୁ କୋଉଠିକାର ।

ଭୋଲା : କ-କ-କଣ କହିଲୁ ? ମୁଁ-ମୁ-ମୁଁ ଓଲୁ ? ହଇରେ ବୋକା, ଲକ୍ଷ୍ମୀ ମା' ପ-ପ-ପଢ଼ି ଦେଉଛନ୍ତି ନା ଠାକୁରେ ପ-ପ-ପଢି ଦେଉଛନ୍ତି ରେ ? ଶ୍ରୀମା --- ଲକ୍ଷ୍ମୀ । ସେ --- ଦୁର୍ଗା, ସେ ମା ।

ମଧୁ : ତୁ କଣ କହୁଛୁ ସେ ଲକ୍ଷ୍ମୀ ମା' କଥା ? ତୁ କହୁଛୁ ସେ ଶ୍ରୀମା'ଙ୍କ କଥା ? ସେ କିପରି ଲକ୍ଷ୍ମୀ ହେଲେ ?

ଭୋଲା : ସେ ସେଇ ଏକା କଥା । ଆମ ମା କ-କ-କହୁଥିଲେ ଶ୍ରୀମା ଯିଏ, ଲ-ଲ-ଲକ୍ଷ୍ମୀ ସିଏ ଦୁ-ଦୁ-ଦୁର୍ଗା ମଧ୍ୟ ସିଏ । ସେ ପରା ମର୍ତ୍ତ୍ୟରେ ଅ-ଅ-ଅବତାର ଧରି ଜନ୍ମ ହୋଇଛନ୍ତି ।

ମଧୁ : ଚୁପ୍ କର, ଲକ୍ଷ୍ମୀ ମା, ଆଉ ତୋର ସେ ମା !

ଭୋଲା : ତୁ-ତୁ-ତୁ ଚୁପ୍‌କର, ମୁଁ-ମୁଁ-ମୁଁ କହୁଛି ଆମ ମା ସାକ୍ଷାତ ଦୁ-ଦୁ-ଦୁର୍ଗା । ମଞ୍ଜୁ ମା କ-କ-କହୁଥିଲେ ।

ମଧୁ : ହଁ, ହଁ ରଖିଥା । କହିଲା ସାକ୍ଷାତେ ଦୁର୍ଗା । ଆଉ ଦୁର୍ଗାଙ୍କ ସହିତ ତୋ ମା' ପୁଣି ସମାନ ? ହାଃ -- ହାଃ -- (ହସିବା)

ଭୋଳା : କଣ ମୁଁ-ମୁଁ-ମୁଁ ମିଛ କହୁଛି । ଏ ଯୁଗରେ ତୁ-ତୁ-ତାଙ୍କର ମ-ମ-ମହିମା ଦେଖିବୁ ?

ମଧୁ : ତୁ ଚୁପ୍ କର୍ ବେ ।

ଭୋଳା : ତୁ-ତୁ-ତୁ ଚୁପ୍ କର ।

ମଧୁ : ଦେଖ୍ ଭୋଳା, ତୁ ମୋ ସାଙ୍ଗେ ଲାଗେ ନା କହୁଛି ।

ଭୋଳା : ଦେଖ୍ ମ-ମ-ମଧୁ ମୋ ସାଙ୍ଗେ ଲା-ଲା-ଲାଗ୍‌ନା କହୁଛି (ଏହି ସମୟରେ ମମତାର ପ୍ରବେଶ)

ମମତା : କିରେ ଏଠି କ'ଣ ହେଉଛି ? ଏମିତି ପାଟି କରୁଛ କାହିଁକି ?

ଭୋଳା : ଦେ-ଦେ-ଦେଖିଲ ଦେଇ - ଏ ମ-ମ-ମଧୁଟା ମିଛ କ-କ-କହୁଛି ।

ମଧୁ : ନାଇଁ ଦେଇ, ଏ ଭୋଳାଟା ମୋ ସାଙ୍ଗରେ ଲଗାଇଛି ।

ଭୋଳା : ନାଇଁ ଦେଇ, ଏ କହୁଛି ମା' ବ-ବ-ବଡ଼ ନୁହନ୍ତି ।

ମଧୁ : ଏ କହୁଛି ତା ମା କୁଆଡ଼େ ବଡ଼, ଦୁର୍ଗା ! ଆଉ ସମସ୍ତେ କିଛି ନୁହନ୍ତି ।

ଭୋଳା : କ-କ-କଣ ହେଲା - ହେ ହେଇଟି ଦେଇ, ସେ ସେ ଦିନ ମୁଁ ନିଜ ଆଖି ଆ-ଆ-ଆଗରେ ଦେଖିଛି - ବେହେରା ଘର ବ-ବ-ବଡ଼ ପୁଅଟା ତିନି ମହଲା କୋଠା ଉପରୁ ପଡ଼ି ଗଲା । ବେ-ବେ-ବେକଟା ମୋଡ଼ି ହୋଇ ଫୁ-ଫୁ-ଫୁଲିଗଲା । ଡାକ୍ତର ମନା କରି ଦେଲା, ଭଲ ହେବନି । ଆ-ଆ-ଆମ ବେହେରା ବାବୁ ଯେମିତି ମା'ଙ୍କୁ ଡାକିଛନ୍ତି ସେ କ୍ଷଣି ଭ-ଭ-ଭଲ ହୋଇ ବଞ୍ଚି ଗଲା । ନ-ନ-ନହେଲେ ଛତ୍ରୁ ତ ....

ମଧୁ : ଆରେ ଯାଃ ବାଟମଙ୍ଗଳା ପରା ମୋ ବଡ଼ ପୁଅକୁ ହଇଜାରୁ ରଖିଛନ୍ତି । ଆରେ, ଯେତେ ହେଲେ ସେ ବଡ଼ ଠାକୁରାଣୀ, ତୁ ମୂର୍ଖ କୋଉଠୁ ଜାଣିବୁ ତାଙ୍କର ମହିମା ?

ଭୋଳା : ହଇରେ କ-କ-କଣ କହିଲୁ ? ମୁଁ-ମୁଁ-ମୁଁ ମୂର୍ଖ ? ଦେଖିଲ, ଦେଖିଲ ଦେଇ ?

ମମତା : କାହିଁକି ଏପରି ପାଟି କରୁଛ ? ଚୁପ୍ କର, ଓଃ .......

ଭୋଳା : ଆରେ କେ-କେ-କେତେ ହଇଜା ରୋଗୀ ତ ନି-ନି-ନିତି ମରୁଛନ୍ତି । ତୋ ଠାକୁରାଣୀ ତାଙ୍କୁ ତ ବଞ୍ଚେଇ ପାରି ନାହାନ୍ତି ?

ମଧୁ : ଆବେ, ଭାଗ୍ୟରେ ନ ଥିଲେ କଉ ମା'କୁ ବାପା ରଖିବ ମ ? ନାଇଁ ନାଇଁ ଦେଇ, ତମେ ଟିକିଏ ନ୍ୟାୟ କର ।

ଭୋଳା : ହଁ ଦେଇ, ତ-ତ-ତମେ ଟିକିଏ ତା-ତା-ତାକୁ ବୁଝାଇ ଦିଅ ।

ମମତା (ମଧୁ ମୁହଁକୁ ଚାହିଁ) ତୁ ଯାହା କହୁଛୁ ସତ ।

ମଧୁ ଦେଖିଲୁ ?

ମମତା : (ଭୋଳା ମୁହଁକୁ ଚାହିଁ) ତୁ ଯାହା କହୁଛୁ ତା ମଧ ସତ ।

ଭୋଳା : ଦେ-ଦେ-ଦେଖିଲୁ ମଧୁ, କେ-କେ-କେମିତି ।

ମଧୁ : ଚୁପ୍ କର ।

ଭୋଳା : ତୁ-ତୁ-ତୁ ଚୁପ୍ କର ।

ମମତା : ଆରେ ଯିଏ ଯାହାକୁ ଭକ୍ତିରେ ଡାକିଲା, ସେ ତା ପାଖରେ ବଡ଼ । ବୁଝିଲ ?

ମଧୁ : ଦେଇ ଏଇ କଥା ଯାହା କହିଲେ, ତାହା ଖାଣ୍ଟି ସତ । ମନ ଦୃଢ ଥିଲେ ଗାଡ଼ିଆ ଗଙ୍ଗା । ପୁରାଣରେ ଅଛି ପରା - ପ୍ରହ୍ଲାଦ ଡାକିବାରୁ ଖମ୍ବ ଭିତରୁ ହରି ବାହାରିଲେ । ସର୍ବ ଘଟେ ନାରାୟଣ । ବୁଝିଲୁ ?

ଭୋଳା : ହଁ ସେଇ କ-କ-କଥା ଯେମିତି ତୋ ବା-ବା-ବାଟମଙ୍ଗଳା ତୋତେ ବ-ବ-ବଡ଼, ମା'ଙ୍କର ଯେ ଭକ୍ତ ତାକୁ ମା' ବଡ଼ । ନା କ-କ-କଣ ଦେଇ ?

ମମତା : ଠିକ୍ କଥା - ଏଥର ଘରକୁ ଯାଆ, ପାଟି କରନି । (ଏହି ସମୟେ ମହେନ୍ଦ୍ର ବାବୁଙ୍କ ପ୍ରବେଶ । ମମତାର ନମସ୍କାର। ମମତା ଓ ମହେନ୍ଦ୍ର ବାବୁ ହସି ହସି ଆସି ପାଠକଙ୍କୁ ସାଙ୍ଗ ହୋଇ ହାତରେ ଫୁଲ ହାର ଧରି ଯିବା । ଭୋଳା ଓ ମଧୁ ମୁଣ୍ଡ କୁଣ୍ଡାଇ କୁଣ୍ଡାଇ ପ୍ରସ୍ଥାନ । ମଞ୍ଚ ଅନ୍ଧକାର ।

## ପଞ୍ଚମ ଦୃଶ୍ୟ

(ମଧ୍ୟରାତ୍ରିର ଅନ୍ଧକାର ମଧ୍ୟରେ କଳା ପୋଷାକ ପିନ୍ଧି ଆଗେଇ ଆସିଲା ମହେଶ । ଏହି ସମୟରେ ବିପରୀତ ଦିଗରୁ ପଶି ଆସିଲା ମୋହନ - ଲୁଗାପଟା ବିପର୍ଯ୍ୟସ୍ତ । ମହେଶ ସହିତ ଧକ୍କା ଲାଗିଲା ।)

ମହେଶ : ୟୁ ଫୁଲ୍ - କଣ ତୋତେ ମଣିଷ ଦେଖା ଯାଉ ନାହିଁ ?

ମୋହନ : (ଟିକିଏ ପଛେଇ ଯାଇ) ଆଁ (ଧୀରେ ଧୀରେ ଆଖି ଖୋଲି ଚାହିଁଲା) କିଏ ? ଓ ମହେଶବାବୁ ? ଓଃ ଆପଣ ଏଇଠି ? ଏତେ ରାତିରେ ?

ମହେଶ : ହ୍ୱାଟ୍ ? ତୁ କିଏ ? ଭାରି ତ ସାହସ ! (ଠେଲି ଦେବା) ଏ ଡ୍ରାଇଭର୍ (ଆଗେଇ ଗଲା କାର୍ ଭିତରକୁ ଗାଡ଼ିର ଯାତ୍ରାରମ୍ଭ ଶବ୍ଦ, ଶୀଘ୍ର ପ୍ରସ୍ଥାନ)

ମୋହନ : ଆପଣ ମୋତେ ଚିହ୍ନି ପାରିଲେ ନାହିଁ ମହେଶ ବାବୁ ? ଟା - ଟା ! ବାଃ ! ମଣିଷ ମୋତେ ଠିକ୍ ଦେଖାଯାଇଛି ମହେଶ ବାବୁ । କିନ୍ତୁ ଆପଣଙ୍କ ଆଖିରେ ଆଇ.ଏ.ଏସ୍. ପରଳ ମାଡ଼ି ଯାଉଛି । ହଁ ଧନମଣି, ତୁମେ ଯେଉଁ ବାଟେ ମାଡ଼ି ଚାଲିଛ ଆମେ ସେଇ କଥା ଜାଣି ! ଯାଅ, ଯାଅ - ବାପ ଧନ୍ଦ ଯାଅ, ଫଳ ପାଇବ ଯେ । ଆରେ ! ମୋହନ ବାପୁଡ଼ାକୁ ଚିହ୍ନି ନାହଁ ପରା !! ମୁଁ ତତେ ଠିକ୍ ଦେଖି ନେବି !

## ଷଷ୍ଠ ଦୃଶ୍ୟ

(ମହେଶର ଆଧୁନିକ ଭାବେ ସଜ୍ଜିତ ବଙ୍ଗଳା । କାନ୍ଥ ଘଡ଼ିରେ ନଅଟା ବାଜିବାର ସଙ୍କେତ । ମହେଶ ଗୋଟିଏ କୋଟ୍ ପିନ୍ଧି ଟାଇଟା ସଜାଡ଼ିବା ସମୟରେ ଭୋଳାକୁ ଡାକିଲା ।

ମହେଶ : ଭୋଳା, ଏ ଭୋଳା ! କିରେ କପେ ଚାହା ଆଣିବାକୁ ବେଳ ହୋଇ ନାହିଁ ?

ଭୋଳା : (ପଶି ଆସି) ବା-ବା-ବାବୁ ମ-ମ-ମତେ ଡାକିଲେ ?

ମହେଶ : ହୁଁ ହଁ, ଏଠି ଆଉ କେତେ ଜଣ ଅଛନ୍ତି କି ?

ଭୋଳା : ବାବୁ - ମୁଁ ମସଲା ବାଟୁଥିଲି ।

ମହେଶ : କାହିଁକି ? ଘରେ ଆଉ କେହି ନାହାନ୍ତି କି ?

ଭୋଳା : ବାବୁ - ମା ଅଛନ୍ତି ।

ମହେଶ ଆଉ ଅଡର୍ଲି ସବୁ କୁଆଡ଼େ ଗଲେ ? ଯା, ଜଲ୍ଦି ଚାହା କରି ଆଣ । ମୋର ସମୟ ହୋଇଗଲା (ଘଡ଼ିକୁ ଚାହିଁବା । ଟିକିଏ ପରେ ମଞ୍ଜୁର ଚାହା ନେଇ ପ୍ରବେଶ) ଏ କଣ ? ତୁମେ ?

ମଞ୍ଜୁ : କାହିଁକି ? କଣ ଭୁଲ୍ ହୋଇ ଗଲା ? (ଅଳ୍ପ ହସି)

ମହେଶ : ନା, ଭୁଲ୍ ନୁହେଁ । ତେବେ ତୁମେ ନିଜେ ନ ଆସି ଚାହାଟା ତ ପଠାଇ ପାରିଥାନ୍ତ !

ମଞ୍ଜୁ : ଚାହା ତ ତିଆରି ହୋଇଥିଲା, ମୁଁ ନିଜେ ନେଇ ଆସିଲି । ଅନ୍ୟକୁ ଅପେକ୍ଷା କରିବା କଣ ଆବଶ୍ୟକ ? ଭୋଳାର ତ ପୁଣି କାମ ଅଛି ? ଅଡର୍ଲି ଛୁଟିରେ ଅଛି । (ମଞ୍ଜୁ ଚାହା କପ୍‌ଟାକୁ ବଢାଇ ଦେଲା)

ମହେଶ (ଗ୍ରହଣ କରି) ରଖ, ଏତେ ତତ୍‌ଲା କିଏ ପିଏ ?

ମଞ୍ଜୁ (କପ୍‌ଟାକୁ ଟେବୁଲ୍ ଉପରେ ଥୋଇ, ହସି) ବାଃରେ, କପ୍‌ଟାକୁ ହାତରେ ନ ଧରି, ନ ଚାଖି, କହୁଛ କ'ଣ ତାତିଲା ।

ମହେଶ : ଅସି ନ'ଟା ହେଲାଣି ? ଆରେ ! ଏ କ'ଣ ?

ମଞ୍ଜୁ : କୁଆଡ଼େ ସିନେମା ବାହାରିଛ ? ସେକେଣ୍ଡ ଶୋ ? ଖାଇନ ଯେ ?

ମହେଶ : ମୁଁ ମୋହନ ଘରେ ଖାଇ ଆସିଛି ।

ମଞ୍ଜୁ : ଆଛା, କେଉଁ ଛବି ଦେଖିବାକୁ ଯାଉଛ ? ମୋତେ ଟିକିଏ ନେବ ନାହିଁ ?

ମହେଶ : ତମକୁ ସେଗୁଡ଼ା ଭଲ ଲାଗିବ ନାହିଁ ।

ମଞ୍ଜୁ : ହଁ, ହଁ, ମୁଁ ଯିବି । ରୁହ, ମୁଁ ଶାଢୀଟା ବଦଳାଇ ଆସେ । ମାତ୍ର ଦୁଇ ମିନିଟ୍ (ଯିବାକୁ ଉଦ୍ୟତ ହେବା)

ମହେଶ : ମଞ୍ଜୁ, ଶୁଣ, ଶୁଣ ! (ମଞ୍ଜୁ ଫେରି ଚାହିଁଲା ।) ତମକୁ ଅସଲ କଥା କହିବାକୁ ଭୁଲିଗଲି । ମୋତେ ଆଜି ଟୁର୍‌ରେ ଯିବାକୁ ହେବ । ମୋହନ ଟିକେଟ୍ କରିଥିଲା । ମନା କରି ଦେବି ।

ମଞ୍ଜୁ : (ମୁହଁ ଶୁଖାଇ) ଓଃ ଟୁର୍‌ରେ ? କାହିଁ ମୋତେ ତ ଲୁଗାପଟା ସଜାଡ଼ିବାକୁ କହି ନାହିଁ ?

ମହେଶ : (ଚାହା କପ୍ ଉଠାଇ) ନା- ତୁମକୁ କହି ନାହିଁ । ଦେଖ, ମୋର ଜଣେ ସାଙ୍ଗ ଘର ସେଇଠି । ତା ସାଙ୍ଗରେ ଯାଉଛି, ସେଇଠି ରହିବି ।

ମଞ୍ଜୁ : କେଉଁ ସାଙ୍ଗ ମ ! କେଉଁଠି ସେ ରହନ୍ତି ?

ମହେଶ : (ଅପ୍ରତିଭ ହୋଇ ଚାହା କପ୍‌ରେ ଓଠ ଲଗାଇ) ମୁଁ ତୁମର ଏତେ ପ୍ରଶ୍ନର ଉତ୍ତର ଦେଇ ପାରିବି ନାହିଁ । (ଚାହା ପିଇ ଲାଗିଲା ।) ପ୍ରତ୍ୟେକ କଥାରେ ଜେରା କରିବା ତୁମର ଗୋଟାଏ ଅଭ୍ୟାସ ହୋଇଗଲାଣି । (ମଞ୍ଜୁ ନୀରବ, ଶଙ୍କାକୁଳ ମହେଶ ପୁଣି ଟିକିଏ ଚାହା ପିଇ କପ୍‌ଟାକୁ ରଖି ଦେଇ) ଚାହାଟା ଥଣ୍ଡା ହୋଇ ଆସିଲାଣି । ବୋଉକୁ କହିବ ସେ ମୋ ସକାଶେ ଅପେକ୍ଷା କରିବ ନାହିଁ । (ବାହାରକୁ ଯିବାକୁ ଉଦ୍ୟତ, ପକେଟ୍‌ରେ ହାତ ମାରି ମନିବ୍ୟାଗ୍ କାଢି ଦେଖିଲା ବେଶି ପଇସା ନାହିଁ । ମଞ୍ଜୁ ସମସ୍ତ ଗତିବିଧି ଲକ୍ଷ୍ୟ କରୁଥାଏ । ମହେଶ ଫେରି ଆସିଲା, ଦେଖ ମଞ୍ଜୁ, ତୁମେ କିଛି ଖରାପ ଭାବିଲ କି ? ମୋର ଗୋଟାଏ ଚିଡ଼ିବା ପ୍ରକୃତି ହୋଇ ଗଲାଣି । ତୁମର କିଛି ଦୋଷ ନାହିଁ । କେଉଁଠିକି ଯାଉଛି, କେଉଁଠି ରହିବି, ସେ ବିଷୟରେ ପଚାରିବା ମଧ୍ୟ ତୁମର ଭୁଲ୍ ନୁହେଁ । ଅସଲ କଥା ହେଲା - ମୁଁ ଯାଉଛି ନିମାପଡ଼ା ।

ମଞ୍ଜୁ : ନିମାପଡ଼ା ଯାଉଛ ?

ମହେଶ : (ପାଖେଇ ଆସି) ହଁ, ତୁମ ପାଖରେ ହଜାରେଟା ଟଙ୍କା ହେଇ ପାରିବ ?

ମଞ୍ଜୁ : ତୁମେ ପରା କାଲି ଫେରି ଆସିବ (ଉଦ୍‌ବିଗ୍ନ ଭାବେ) ? ଆଉ ଟଙ୍କା କଣ ହେବ ?

ମହେଶ : ମୋର ସାଙ୍ଗ ଜଣକ ପରା ଟଙ୍କା ଧାର ମାଗିଥିଲା ।

ମଞ୍ଜୁ : ସାଙ୍ଗ ଜଣକ କିଏ ମ ?

ମହେଶ : ଓହୋ - ପୁଣି ତ ସେଇ ଜେରା ! (ବିରକ୍ତିର ସହ) ବାସ୍ତବିକ୍ ମଞ୍ଜୁ ! (ପୁଣି ମୁହଁର ଭାବ ବଦଳାଇ ଅଳ୍ପ ହସି) ଆଃ, ଏ ଚିଡ଼ିବା ପ୍ରକୃତି ମୋର ଗଲାନି : ନାଇଁ, ସତରେ ମୋର ଟଙ୍କାଟା ବିଶେଷ ଦରକାର । ପରେ ନିଶ୍ଚୟ କହିବି ଯେ !

ମଞ୍ଜୁ : ଆଚ୍ଛା, ଚେଷ୍ଟା କରିବି । (ଚାଲି ଗଲା ଟଙ୍କା ଆଣିବା ପାଇଁ । ମହେଶ ସିଗାରେଟ୍ ଲଗାଇ ଧୂଆଁ ଛାଡ଼ି ଏପଟ ସେପଟ ହୋଇ ଚେୟାର୍‌ରେ ବସିଲା ଉତ୍କଣ୍ଠାର ସହ । ମଞ୍ଜୁ ଆସୁଥିବା ଦେଖି ପୁଣି ଉଠି ପଡ଼ିଲା । ମଞ୍ଜୁ ନୋଟ୍ ବିଡ଼ାକ ନେଇ ଆସି ବିନା ବାକ୍ୟ ବ୍ୟୟରେ ବଢାଇ ଦେଲା । ମହେଶ ତାହାକୁ ଏକ ପ୍ରକାର ଝାମ୍ପି ନେଲା ।)

ମହେଶ : ଥାଙ୍କ୍ ୟୁ, ଭେରି ଗୁଡ୍, ମୁଁ ଏତିକି ତୁମ ପାଖରୁ ଆଶା କରୁଥିଲି । ବାଏ,ବାଏ, ଗୁଡ୍ ନାଇଟ୍ (ମଞ୍ଜୁର ଗାଲକୁ ଚିପି ଦେଇ ବାହାରି ଗଲା । ମଞ୍ଜୁ ଚାହିଁ ରହିଥାଏ ମହେଶର ଯିବା ବାଟକୁ । ଆଖି ତାର ଛଳ ଛଳ ହୋଇ ଆସୁଥାଏ । ମେନକାର ପ୍ରବେଶ)

ମେନକା : ବୋହୂ କିଲୋ, ଆଲୋ ତୁ ଏଇଠି ? ମହୀ ଗଲା କୁଆଡ଼େ ?

ମଞ୍ଜୁ : (ଲୁହ ପୋଛି ନେଇ) ନିମାପଡ଼ା ।

ମେନକା : ନିମାପଡ଼ା ! କିଲୋ ନିମାପଡ଼ । ପରା ଏଇ ପଅର ଦିନ ଯାଇଥିଲା । ପୁଣି ଆଜି ଗଲା କାହିଁକି ? କେବେ ଫେରିବ ?

ମଞ୍ଜୁ : କାଲି ଆସିବେ କହି ଗଲେ (କଣ୍ଠ ଭାଙ୍ଗି ଆସୁଥାଏ) ।

ମେନକା : ସୁଟ୍‌କେଶ୍‌ଟା ତ ଘରେ ଅଛି । ନେଇ ନି । ଆଉ କଣ ନେଲା ?

ମଞ୍ଜୁ : ଟଙ୍କା ନେଲେ ।

ମେନକା : ଟଙ୍କା - ତୋ ଚୁଡ଼ି ବନ୍ଧା ପକାଇ ଯାହା ରଖି ଥିଲୁ ଦେଇ ଦେଲୁ ? (ମଞ୍ଜୁ ନୀରବ) ଯାଃ, ରାତି ପାହିଲେ ଦୋକାନୀ ମାଗିବ, ଦୁଧବାଲା, ପରିବା ବାଲା ମାଗିବ । କଣ ଆଉ ଦେବୁ ? ଗଲା, ଗଲା, ସବୁ ଗଲା । ଘର ବୁଡାଇ ଦେଲା । ଶହ ଶହ ଟଙ୍କା ଅର୍ଜିଲା । ସବୁ ଉଡ଼ାଇ

ଦେଲା ! ଗୋଟି ଗୋଟି କରି ବୋହୂ ଦେହରୁ ଗହଣା ନେଇଗଲା । ହେ ରାଧାଗୋବିନ୍ଦ ! ତାକୁ ବାଟକୁ ଆଣିବାକୁ ମୋର ଆଉ ସାଧ ନାହିଁ ଲୋ ମା । ହେ ରାଧାଗୋବିନ୍ଦ, ତୁମେ ହିଁ ମୋର ଭରସା ! (ମୁଣ୍ଡରେ ହାତ ଦେଇ ପ୍ରସ୍ଥାନ, ମଞ୍ଜୁ ମୁହଁ ବୁଲାଇ ନେଇ ଲୁଗା କାନିରେ ଆଖି ପୋଛିଲା । ମା'ଙ୍କ ଫଟୋକୁ ଲକ୍ଷ୍ୟ କରି)

ମଞ୍ଜୁ : ମା' ତାଙ୍କୁ ମଣିଷ କର, ପରିବର୍ତ୍ତନ କର - ମା' କରୁଣାମୟ ! ତୁମେ ହିଁ ମୋର ଭରସା । (ହସି ହସି ମମତାର ପ୍ରବେଶ ଏବଂ ପରିସ୍ଥିତି ଦେଖି ହଠାତ୍ ନୀରବ ହୋଇଯିବା ।)

ମମତା : ଛି ଭାଉଜ, ସବୁବେଳେ ଏମିତି କାନ୍ଦିଲେ ହେବ ? ମା'ଙ୍କ ପ୍ରତି କଣ ତୁମର ବିଶ୍ୱାସ ନାହିଁ ? ମା'ପରା କହିଛନ୍ତି - "ସାହସ ଓ ବିଶ୍ୱାସ ରଖ, ମୁଁ ତୋ ସହିତ ରହିଛି ।"

ମଞ୍ଜୁ : (ଦୀର୍ଘ ନିଃଶ୍ୱାସ ପକାଇ) ବିଶ୍ୱାସ ଅଛି ମମତା, ବିଶ୍ୱାସ ଅଛି - ନ ହେଲେ ବଞ୍ଚିଛି କିପରି ?

ମମତା : ଚାଲ ଘରକୁ ଯିବା - ଖାଇବ । ଏମିତି ବ୍ୟସ୍ତ ହୋଇ ପଡୁଛ କାହିଁକି ?

ମଞ୍ଜୁ : ତୁମେ ବୁଝିପାରିବନି ମମତା, ବୁଝିପାରିବନି । ହେ ମା' !! ସବୁ ତୁମରି ଇଚ୍ଛା । (ନୀରବ ହେଲା । ମଞ୍ଚ ଅନ୍ଧକାର ହେବା .... ଆଲୋକ ଜଳିବା ପରେ ଦେଖା ଗଲା)

(ମେନକା କାର୍ଯ୍ୟବ୍ୟସ୍ତ, ମଣି ଦେଈଙ୍କର ପ୍ରବେଶ)

ମଣି ଦେଈ : ଆଲୋ ମଞ୍ଜୁ ! କୁଆଡ଼େ ଗଲା ବା ?

ମେନକା : କଣ କି ସରଗପଲ ? ଆସ ଭିତରକୁ ଆସ । କଣ ଏତେ ତରତର ?

ମଣି ଦେଈ : ଆଗୋ, ଶୁଣିଲଣି ? ଆମ ଟୋକୀ ମମତା ବା ?

ମେନକା : ହଁ, କଣ ହେଲା ?

ମଣି ଦେଈ : ଏ ମନୋଜ ମ ! ମହେନ୍ଦ୍ର ବାବୁ ଯାକୁ ପୁଅ କରି ରଖିଛି । ତାକୁ ପରା ଆମ ମମତା ବାହା ହେବାକୁ ଲଗାଇଛି ।

ମେନକା : ମହେନ୍ଦ୍ର ତ ବାହା ହୋଇନି । ତା'ର ପୁଅଟେ କେଉଁଠି ଥିଲା ବା ?

ମଣି : ହଇଗୋ ସରଗଫଳ ମନୋଜକୁ ପରା ପାଳିଥିଲା ସେ ମହେନ୍ଦ୍ର ବାବୁ । ପିଲାଟାର ବାପା ମା' ଠିକଣା ନାହିଁ । ଆମ ନାତୁଣୀ ମମତା କ'ଣ ତା ପେରେମରେ ପଡି ଜିଦ୍ ଧରିଛି ବାହା ହେବ ବୋଲି ।

ମେନକା : ହଁ, ମୁଁ ଥରେ ସେ ପିଲାଟାକୁ ଦେଖିଥିଲି । ଭଲ ପିଲାଟେ ତ ? ଡାକ୍ତର ହୋଇଛି ପରା ? ବାହା କରି ଦେଉନ ?

ମଣି : ଏଇଥି ପାଇଁ ପରା ଘରେ ଅନର୍ଥ । ପୁଅ ସକାଳୁ ଖାଇନି - ବୋହୂଟା କାନ୍ଦି କାନ୍ଦି ବାପା ଘରକୁ ଯିବ ବୋଲି ବାହାରିଛି । (ମଞ୍ଜୁର ପ୍ରବେଶ)

ମଞ୍ଜୁ : କଣ ହେଲା ମାଉସୀ ? ମନୋଜ ଭଳି ପିଲା କଣ ଆପଣ ପାଇବେ ? ସେ ଗୋଟିଏ ରତ୍ନ ।

ମଣି : ମୁଁ ପରା ସେଥିପାଇଁ ଆସିଛି । ତୁ ଟିକିଏ ଯାଇ ମମତାର ବାପାକୁ ବୁଝାଇ ଦିଅନ୍ତୁ । ମତେ କିଛି ଭଲ ଲାଗୁନି । ମମତା କାନ୍ଦି କାନ୍ଦି ଦୁଇ ଦିନ ହେଲା ଖାଇନି । ଘରେ ତ ଗୋଟାଏ ପାଲା ଚାଲିଛି !

ମେନକା : ମମତା ତ ଏବେ ଆସିଥିଲା । କାହିଁ କିଛି କହିନି । ସାଙ୍ଗେ ସାଙ୍ଗେ ଚାଲିଗଲା ।

ମଞ୍ଜୁ : ଆଚ୍ଛା, ମୁଁ ମଉସା ମାଉସୀଙ୍କୁ ବୁଝାଇ ଦେଉଛି । ମନୋଜ ଗୋଟାଏ ରତ୍ନ । କେତେ ରୋଗୀଙ୍କୁ ସେ ସେବା କରୁଛି । ଶିକ୍ଷା କେନ୍ଦ୍ରର ଦାୟିତ୍ୱରେ ରହିଛି । ମହେନ୍ଦ୍ର ବାବୁ ତାକୁ ପୁଅ ପରି ବହୁତ ସ୍ନେହ କରନ୍ତି । ସବୁ ମା'ଙ୍କ କୃପା ।

ମଣି : ହଉ ! ତୁ ଟିକିଏ ବୁଝାଇ ଦେଖ୍ । କ'ଣ କରିବି ଲୋ ମାଁ ?

ମେନକା : ହଁ, ଆଜିକାଲି ଟୋକାଟୋକୀଙ୍କୁ କିଏ ବୁଝାଇବ ମ ?

ମଣି ଦେଈ : ହଁ ଗୋ ସରଗଫଳ କିଏ ପାରିବ ସେମାନଙ୍କୁ । (ମଞ୍ଚ ଅନ୍ଧକାର ଓ ଯବନିକା ପତନ)

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ମହେଶର ଅଫିସ୍‌। ଗୋଟାଏ ବଡ଼ ଟେବୁଲ୍ ପାଖରେ ତାର ଚୌକି ସାମ୍ନାରେ ଅନେକ ଚୌକି ବେଞ୍ଚ ସଜା ହୋଇଥାଏ । ଗୋଟାଏ ଗୋଦ୍‌ରେଜ୍ ଆଲମାରୀ । ଟେବୁଲ୍ ଉପରେ ଟେଲିଫୋନ୍ ଓ ଫାଇଲ୍ ଗଦା । ମହେଶ ନିବିଷ୍ଟ ମନରେ କିଛି ଗୋଟାଏ ଲେଖି ଲାଗିଥିଲା । ଏହି ସମୟରେ ଅଡର୍ଲି ଆସି ଖଣ୍ଡିଏ ସ୍ଲିପ୍ ଦେଇ ସାଲ୍ୟୁଟ୍ ପକାଇଲା)

ମହେଶ (ଲେଖା ବନ୍ଦ କରି, ସ୍ଲିପ୍ ଦେଖି ସାମାନ୍ୟ ହସ ଖେଳାଇ) ଡାକି ଦିଅ । (ଅଡର୍ଲିର ପ୍ରସ୍ଥାନ)

ମୋହନ (ପ୍ରବେଶ କରି) କଣ ସାହେବ ତାଙ୍କର ଖାସ୍ କାମରେ ଅଛନ୍ତି ?

ମହେଶ ହଁ ଅଛନ୍ତି । ଆସ,ଆସ, ବସ । କଣ ଖବର ? (କଲିଙ୍ଗ୍ ବେଲ୍‌ରେ ଚାପ ଦେବା । କିଛି ସମୟ ପରେ ଚପରାଶି ଆସି ପହଞ୍ଚିଲା ।) ଆଉ ଖବର କଣ ?

ମୋହନ : ଖବର କାଗଜରୁ ଜାଣିବେ ।

ମହେଶ : ମୁଁ ପଚାରୁଛି ତୁମର ଖବର । (ଚପରାଶିକୁ ଚାହିଁ ଦୁଇ ଜଣଙ୍କ ପାଇଁ ଚା' ବରାଦ କଲା । (ହସିବା)

ମୋହନ : ମୋହନ ଯାହା କହେ, ଖାଣ୍ଟି କଥା କହେ । ହଉ, ଛାଡ଼ । ମୁଁ ଗୋଟାଏ ବିଶେଷ ଦରକାରୀ କାମରେ ଆସିଛି ।

ମହେଶ : କଣ ମୋ'ଠାରେ ?

ମୋହନ : ହଁ (ଏଣେତେଣେ ଚାହିଁ, ଧୀର ସ୍ୱରରେ) କାଲି ରାତିରେ ବାବୁ କୁଆଡ଼େ ଯାଇଥିଲେ, କହି ପାରିବେ କି ?

ମହେଶ : ଏଁ ?

ମୋହନ : ପ୍ରାୟ ରାତି ବାରଟାରେ ।

ମହେଶ : ଏଁ, କାଇଁ ନାଇଁ ତ ?

ମୋହନ : ହେ - ହେ - ହେ - ଏ ବାବୁ ସିନା ଭୁଲି ଯାଇଛନ୍ତି । ମୋହନ ବାପୁଡ଼ା ଠିକ୍ ମନେ ରଖିଛି ।

ମହେଶ : ଓ (ମୁହଁର ଭଙ୍ଗୀ ବଦଳାଇ ଅଳ୍ପ ହସି) ଏହା ବୋଲି ସବୁ କଥା କଣ କୁହାଯାଏ ? ତା'ଛଡ଼ା ଏ ଖବର ତୁମ ପାଖକୁ ଗଲା କେମିତି ?

ମୋହନ : ଇଂରାଜୀରେ ପରା ଗୋଟାଏ କଥା ଅଛି, କାନ୍ଥର କାନ ଅଛି । ପବନର କାନ ନ ଥିବ କାହିଁକି ? ତେବେ ନିଶ୍ଚିନ୍ତ ରୁହ, ମୋ ଛଡ଼ା ସେ କଥା କେହି ଜାଣି ନାହାନ୍ତି । ଜାଣିବାର ସମ୍ଭାବନା ନାହିଁ - ଯଦି ମହେଶ ବାବୁ ମୋର (କାନ ପାଖେ କହିବା) ...

ମହେଶ : ତୁମେ ଜାଣ ଏଇଟା ସରକାରୀ ଅଫିସ୍ ?

ମୋହନ : ଆଉ ଏ ସରକାରୀ ଅଫିସ୍ କଥା କିଏ ନ ଜାଣେ ? ଅଧିକାଂଶ ଅଫିସର୍ ଏହାରି ଭକ୍ତ ? ଏ ଯୁଗର ନିୟମ ହେଲା 'କଣ୍ଟକେନୈବ କଣ୍ଟକଂ' । ଅଫିସର୍ ହୋଇଛି, ବୁଝି ପାରୁନା ବୋଧେ । ତେବେ ଶୁଣ, ଯଦି ଚୋର ଧରିବାକୁ ଚାହଁ, ତେବେ ଯିଏ ଚୋରୀ କରିଥିବ, ସେଭଳି ଲୋକଙ୍କୁ ବ୍ୟବହାର କରିବ । ଯଦି ନିଶା ନିବାରଣ ଅକାମୀ କରିବାକୁ ଚାହଁ, ତେବେ ସେହି ବିଭାଗରେ ଯେ ମାଲିକ, ତାଙ୍କୁ ନିଶାର ଭକ୍ତ କରିବା ଆବଶ୍ୟକ । ଆଉ ଯଦି ଦୁର୍ନୀତି ଚଳାଇବାକୁ ଚାହଁ, ତେବେ ଦୁର୍ନୀତି ନିବାରଣ ବିଭାଗର ମାଲିକଙ୍କୁ ଦୁର୍ନୀତିରେ ପୂରାଅ । ହାଃ - ହାଃ - ହାଃ ବୁଝିଲ ? ଏଇଟା ଭାଇ ମୋ ନୀତି । କଣ ? ମୋର ପ୍ରସ୍ତାବରେ ରାଜି ତ ?

ମହେଶ : ଦେଖ, ମୋହନ ସେ କ୍ଷମତା ମୋର ନାହିଁ, ଆଉ ତା'ଛଡ଼ା......

ମୋହନ : କ୍ଷମତା ନାହିଁ ! କଣ, ଗୋଟାଏ ଆଇ.ଏ.ଏସ୍. ଅଫିସର୍ ହୋଇଛ, କ୍ଷମତା ନାହିଁ ? ତୁମ ସହକର୍ମୀଙ୍କୁ କହ ଦେଖି କେତେଦୂର ଆଗେଇ ଆସିବେ । ବିଦେଶୀ ଜିନିଷ ନ ଚାହେଁ କିଏ ? ତେବେ

ମହେଶ : ଆଃ, ଆସ୍ତେ । (ଦରୱାନ୍ କଫି ଓ ବିସ୍କୁଟ୍ ଆଣି ପହଞ୍ଚିଲା ।)

ମୋହନ : ଦେଖ ମହେଶ ବାବୁ, ବହୁତ ଭାବିଚିନ୍ତି ମୁଁ ଏ ବ୍ୟବସାୟ ପନ୍ଥା ସ୍ଥିର କରି ସାରିଛି। ଆଉ ତୁମେ ଜାଣ, ମୋହନ ଯେଉଁ କାମରେ ହାତ ଦିଏ, ନ କରି ଛାଡ଼େ ନାହିଁ।

ମହେଶ : (ଚପରାଶିର ପ୍ରସ୍ଥାନ ଦିଗରୁ ଦୃଷ୍ଟି ଫେରାଇ) କିନ୍ତୁ ଏ କ୍ଷେତ୍ରରେ ମୁଁ କଣ କରି ପାରିବି କୁହ।

ମୋହନ : ଇଚ୍ଛା କଲେ ଏକ ସେକେଣ୍ଡ୍ ଭିତରେ ସବୁ ....।

ମହେଶ : ଅସମ୍ଭବ ! ସେଇଟା କ୍ଷମତାର ଅପବ୍ୟବହାର ହେବ।

ମୋହନ : କାହିଁକି ? ପ୍ରୋବେସନ୍ ସମୟରେ ସରକାରୀ ଗାଡ଼ିରେ ଅନ୍ଧାରି ବିଜେ ତ ବେଶ୍ ସମ୍ଭବ ହୋଇ ପାରୁଛି। ଆଉ ......

ମହେଶ : (ବିରକ୍ତି ସହ) ମୋହନ !!!

ମୋହନ : ମୁଁ ବଡ଼ ଦୁଃଖିତ, ମହେଶ ବାବୁ। ଏହା କହିବା ଦରକାର ପଡ଼ିବ ବୋଲି ଅବଶ୍ୟ ଭାବି ନ ଥିଲି। ତଥାପି ....

ମହେଶ : ତଥାପି .. ମାନେ ..?

ମୋହନ : ଏଠିକି ଆସିବା ପୂର୍ବରୁ ମୁଁ ହୋମ୍ ଟାସ୍କ ଶେଷ କରି ଦେଇ ଆସିଛି। ମାନେ, ତୁମ ବିରୋଧରେ ସମସ୍ତ ତଥ୍ୟ। ବୁଝିଲ ?

ମହେଶ : ମାନେ ତୁମେ କଣ ଚାହଁ (ଭୟରେ) ?

ମୋହନ : ମାନେ, ତୁମ ବିରୋଧରେ ମୋର ସମସ୍ତ ପ୍ରମାଣ ମହଜୁଦ୍। ଆଉ ମୋର କଥା ଅନୁଯାୟୀ କାମ ନ କଲେ ତୁମର ଉଜ୍ଜ୍ୱଳ ଭବିଷ୍ୟତଟି ଛାରଖାର ହୋଇଯିବ ନିଶ୍ଚୟ। ନା କଣ ?

ମହେଶ : ମୋହନ, ବନ୍ଧୁ ହୋଇ ତୁମେ ଏତେ ଦୂର ନୀଚ ହୋଇ ପାରିବ ବୋଲି ମୁଁ କଳ୍ପନା କରି ନ ଥିଲି। ଏସବୁ ରାସ୍ତା ତମେ ମତେ ଦେଖାଇଥିଲ !

ମୋହନ : ସେଇଟା ଠିକ୍। ଏଇଟାକୁ ମଧ୍ୟ ବ୍ଲାକ୍‌ମେଲ୍ କହି ପାର। ମୁଁ କିନ୍ତୁ ନାଚାର। (ଟେଲିଫୋନ୍ ବାଜି ଉଠିଲା)

| | | |
|---|---|---|
| ମହେଶ | | (ଟେଲିଫୋନ୍ ଉଠାଇ) ମହେଶ ସ୍ପିକିଙ୍ଗ । ଆଜ୍ଞା ? ଆଜ୍ଞା ... ହଁ ହଁ, ପାଇଛି ଆଜ୍ଞା ... ହଁ, ହଁ ପଚାଶ ହଜାର ଟଙ୍କା ବାଣ୍ଟିବାକୁ ହେବ ? ପଅର ଦିନ ଯିବାକୁ ହେବ ? ଆଚ୍ଛା ହେଉ - ମନ୍ତ୍ରୀ ଯିବେ ? ହଉ ଆଜ୍ଞା, ମୁଁ ନିଶ୍ଚୟ ସନ୍ଧ୍ୟାବେଳେ ଜଣାଇ ଦେବି । ଆଜ୍ଞା ହଁ, ହଁ, ମନେ ରହିଲା - ଜଗତ୍‌ସିଂହପୁର ତ ? (ରିସିଭରଟି ଥୋଇଦେଲା ।) |
| ମୋହନ୍ | : | ଭଦ୍ର ଲୋକଟି କିଏ ? |
| ମହେଶ | : | ମୋର ନିକଟ ଉପରିସ୍ଥ କର୍ମଚାରୀ । ମାନେ, ଜିଲ୍ଲା କଲେକ୍ଟର୍ । |
| ମୋହନ | : | ଆଚ୍ଛା ମହେଶ ବାବୁ, ଗୋଟାଏ କଥା । ତୁମେ ଯଦି କହ ମୋ ସକାଶେ ଗୋଟାଏ ଲାଇସେନ୍ସ ବ୍ୟବସ୍ଥା କରି ପାରିବ ନି, ମୁଁ ମାନିବାକୁ ପ୍ରସ୍ତୁତ ଅଛି ଯେ, ତୁମ କଥା ପଛରେ କିଛି ବଳିଷ୍ଠ ଯୁକ୍ତି ଅଛି । କିନ୍ତୁ ମୁଁ ଯଦି କହେ, ତୁମେ ଅନ୍ୟ ଏକ ଉପାୟରେ ମୋତେ ସାହାଯ୍ୟ କରି ପାରିବ ? |
| ମହେଶ | : | ତାହାହେଲେ ଖୁସୀ ହେବି । |
| ମୋହନ | : | ବେଶ୍, ତାହାହେଲେ ମୋର ଧାରଣାଟା ଠିକ୍ ଯେ, ଆଜି ସନ୍ଧ୍ୟା ସୁଦ୍ଧା ମୁଁ ପଚାଶ ହଜାର ଟଙ୍କାର ମାଲିକ ହୋଇ ପାରିବି । |
| ମହେଶ | : | ମୋହନ ବାବୁ ! ତୁମେ ବୋଧହୁଏ ଭୁଲି ଯାଉଛ ଯେ, ଏହା ସରକାରୀ ଟଙ୍କା ! |
| ମୋହନ | : | ନା, ଭୁଲି ପାରିନି, କିନ୍ତୁ ମୁଁ ତୁମ ପାଖରୁ ଦାନ ଚାହୁଁ ନାହିଁ । ମୁଁ ଚାହେଁ ଧାର । ଏଇ ମାତ୍ର କାଲି ଦିନଟି ପାଇଁ । କ'ଣ ରାଜି? |
| ମହେଶ | : | ତୁମକୁ ମୁଁ କିପରି ବୁଝାଇବି, ସରକାରୀ ଚାକିରିରେ ଏପରି କାର୍ଯ୍ୟ କରିବା କେତେ ବିପଦଜନକ । |
| ମୋହନ | : | ମୁଁ ଯଦି ପ୍ରମାଣ ଦିଏ ଯେ, ଏହାଠାରୁ ଅଧିକ ବିପଦ୍‌ଜନକ କାର୍ଯ୍ୟ ତୁମ ଦ୍ୱାରା ହୋଇ ପାରିଛି ଏବଂ ......... |
| ମହେଶ | : | ପୁଣି ସେଇ କଥା ? |

ମୋହନ    କହିଛି ତ ମୁଁ ଦୁଃଖିତ, ନାଚାର୍, ମୋର ସେତକ ଟଙ୍କା ଆବଶ୍ୟକ ବ୍ୟବସାୟ ପାଇଁ ।

ମହେଶ : ଏଇ ପ୍ରକାର ପନ୍ଥା ଅନ୍ୟାୟ । ଆଉ ଏଭଳି ବ୍ୟବସ୍ଥା ବେଆଇନ୍ । ତୁମେ ଚାହଁ ଏଥିରେ ମୋର ସାହାଯ୍ୟ ?

ମୋହନ    ଦୁନିଆରେ ବହୁତ ବେଆଇନ୍ ଜିନିଷ ମଧ୍ୟରେ ଏହାର ସ୍ଥାନ ଅତି ନଗଣ୍ୟ । ଚିନ୍ତା କରିବା ଆବଶ୍ୟକ ନାହିଁ । ଜଗତ୍‌ସିଂହପୁର ଯିବା ପୂର୍ବରୁ ସରକାରୀ ମୁଦ୍ରା ପୂର୍ଣ୍ଣ ହୋଇ ସାରିଥିବ । କେବଳ ମଝିରେ ମୁଁ ଯାହା କିଛି ଲାଭ ଅର୍ଜନ କରି ଥିବି । ଦେଖ, ମୋ ପ୍ରସ୍ତାବରେ ରାଜି ତ ?

ମହେଶ    (କିଛି ସମୟ ନୀରବ ରହି) ମୁଁ ଦେଖୁଛି, ତୁମର ଏ ଅନ୍ୟାୟ ଦାବୀକୁ ଗ୍ରହଣ କରି ନେବା ଛଡ଼ା ଉପାୟ ନାହିଁ ।

ମୋହନ    ୟେସ୍, ଦାଟ୍‌ସ୍ ଲାଇକ୍ ଏ ଗୁଡ୍ ବୟ୍ । ଦେଖିବ, ମୋହନ କୌଣସି ମତେ ବିଶ୍ୱାସଘାତକତା କରି ନ ପାରେ ।

ମହେଶ    ଦେଖ, ପରଦିନ ସନ୍ଧ୍ୟା ସୁଦ୍ଧା ମୁଁ ଯେପରି ଟଙ୍କାଟା ଫେରି ପାଏ (ଚେୟାରରୁ ଉଠି ମୋହନ ହାତରେ ଟଙ୍କା ଦେବା ବେଳେ ମଞ୍ଚ ଅନ୍ଧକାର ।)

## ଦ୍ୱିତୀୟ ଦୃଶ୍ୟ

(ମହେଶ ଘର ବାରଣ୍ଡା, ପାଖରେ ଟେଲିଫୋନ୍, ସମୟ ସନ୍ଧ୍ୟା ସାତଟା । ମହେଶ ଯାତ୍ରା ପାଇଁ ସୁଟ୍‌କେଶ୍ ଓ ବେଡିଂ ପ୍ରଭୃତି ପ୍ରସ୍ତୁତ କରି ବ୍ୟସ୍ତ ମନୋଭାବ ନେଇ ଘରେ ପଦଚାରଣ କରୁଥାଏ । ଥରକୁ ଥର ନିଜର ଘଡ଼ି ଓ କାନ୍ଥ ଘଡ଼ି ପ୍ରତି ଲକ୍ଷ୍ୟ କରୁଥାଏ । ମେନକା ତରତର ହୋଇ ଭିତରକୁ ପଶି ଆସିଲେ ।)

ମେନକା : କିରେ ମହୀ, ତୋର ପରା ଛଅଟା ବେଳକୁ ଯିବାର ଥିଲା, କଣ ଗାଡ଼ି ଆସି ନାହିଁ ?

ମହେଶ : ଉଁ -- ନା - ଏଁ - ହଁ ଗାଡ଼ି ଆସିଛି । ମୁଁ ଆଉ ଜଣକୁ ଅପେକ୍ଷା କରିଛି । ସେ ଆସିଲେ ଚାଲିଯିବି ।

ମେନକା : ତୋ ମୁହଁଟା କାହିଁକି ଭାରି ଶୁଖିଲା ଦିଶୁଛି ଆଜି ? ତୁ ବେଶି ସମୟ ରହିବୁ ନାହିଁ । ଶୀଘ୍ର ଫେରି ଆସିବୁ । ଆଲୋ ଏ ବୋହୂ, ବେଇଗି ଆ । ଭୋଳାଟା କୁଆଡ଼େ ଗଲା ମ ? ଭୋଳା, ଏ ଭୋଳା !

ମହେଶ : (ସହଜ ଭାବର ଛଳନା କରି) କଣ ମନ୍ଦିରକୁ ବାହାରିଛୁ କି ? ଭୋଳା ତ କଣ ରିକ୍ସା ଡାକି ଯାଇଛି !

ମେନକା : ନାଇଁ ମ, ଏ ବୋହୂ ତୋତେ କିଛି କହିନି କି ।

ମହେଶ : ହଁ, କଣ କହୁଥିଲା, ମୁଁ ଶୁଣି ପାରିନି ?

ମେନକା : ସେ ଡାକ୍ତର ମହେନ୍ଦ୍ରବାବୁଙ୍କ ଘର ପାଖେ ମ । ପାଠଚକ୍ରରେ କଣ ସବୁ ନାଚଗୀତ କରୁଛନ୍ତି । ମମତା ଆସି କହି ଦେଇ ଯାଇଥିଲା । ବୋହୂ କହିଲା - ବୋଉ, ତୁମେ ନ ଗଲେ ମୁଁ ଯିବି ନାହିଁ । କହିଲି, ହଉ ତେବେ ଚାଲ୍ ।

ମହେଶ : ତୁ ପୁଣି କେବଠୁ ସେ ପାଠଚକ୍ରରେ ମାତିଲୁଣି ମ ?

ମେନକା (ହସିହସି) ନାଇଁ ମ, ମୁଁ କିଆଁ ପାଠଚକ୍ରକୁ ଯିବି ? କଣ ଟିକିଏ ନାଚଗୀତ ହେଉଛି । ମହାପ୍ରଭୁଙ୍କ କଥା ...

ମହେଶ : (ହସିବାକୁ ଚେଷ୍ଟା କରି) ହଉ ତେବେ ଯା, ମା'ଙ୍କ ଭକ୍ତ ନ ହେଲେ ରକ୍ଷା ।

ମେନକା : (ହସି) ତୋର ଯେଉଁ କଥାରେ ପୁଅ । ହଉ ମୁଁ ଯାଉଛି । ବୋହୂକୁ କହି ଦେବୁ, ପଡ଼ିଶା ଘରେ ମୁଁ ଅଛି । ରିକ୍ସା ଆସିଲେ ଆସିବି (ପ୍ରସ୍ଥାନ - ଟେଲିଫୋନ୍ ବାଜି ଉଠିଲା)

ମହେଶ (ଟେଲିଫୋନ୍ ଉଠାଇ) ହ୍ୟାଲୋ । ମୁଁ ମହେଶ କହୁଛି । ହଁ କଣ ହେଲା ? ହଁ ହଁ, କାହିଁକି ? କଣ କହିଲ ? ଦୁଇହଜାର ମାତ୍ର ... ଏଁ, କି ଆଶ୍ଚର୍ଯ୍ୟ ... ! ହୁଁଃ ଏଇଟା କଣ ବ୍ୟକ୍ତିଗତ କଥା ହୋଇଛି ? ଏଁ ଏତେ ବେଳକୁ ଅସୁବିଧା ...? ମୋର ଅସୁବିଧା କଥା ତୁମର ବୁଝିବା ଉଚିତ ଥିଲା । ଏଁ କଣ ହେଲା ? ତୁମେ ଏତେ କୃତଘ୍ନ ହୋଇ ପାରିଲ ? ହଁ ହଁ ଆଉ କଣ କୁହାଯାଇ ପାରେ ? ହଁ ହଁ କରିପାର । ବେଶ୍ ତ, ତାହାହେଲେ ମୋତେ ପୋଲିସ୍‌ର ସାହାଯ୍ୟ ନେବାକୁ ପଡ଼ିବ । ହଁ ହଁ,

ମୁଁ ଜାଣେ । କିନ୍ତୁ ତୁମେ ମୋତେ ଯାହା ଦୁର୍ବଳ ମନେ କରୁଛ, ମୁଁ ତାହା ନୁହେଁ । (ବିରକ୍ତିର ସହ ଟେଲିଫୋନ୍ ରଖି ଦେଲା) ହଁ (ମହେଶ ନିଜକୁ କ୍ରମଶଃ ଶାନ୍ତ କରି ଆର୍ମଚେୟାର୍ ଉପରେ ବସି ପଡ଼ିଲା । ପୁଣି ଥରେ ଠିଆ ହେବା ସମୟରେ ମଞ୍ଜୁ ଅଳଙ୍କାର ଓ ବେଶଭୂଷାରେ ସଜ୍ଜିତ ହୋଇ ପାଖରେ ଠିଆ ହେଲା । ମହେଶ ନିଜର ଉତ୍କଣ୍ଠା ଦମନ କରି ନ ପାରି ନିରୀକ୍ଷଣ କଲା ।)

ମଞ୍ଜୁ : ଆରେ ! (ମନ୍ଦ ହସି) କଣ ଏମିତି ବଲବଲ କରି ଚାହିଁ ରହିଛ ?

ମହେଶ (ଶୁଖିଲା ହସ ଖେଳାଇ) କିଛି ନାହିଁ, ଦେଖୁଥିଲି, ତୁମେ କେମିତି ସୁନ୍ଦର ଦେଖାଯାଉଛ ।

ମଞ୍ଜୁ : କାହିଁକି ? ଆଗରୁ କଣ ଦେଖାଯାଉ ନ ଥିଲି ?

ମହେଶ (ମଞ୍ଜୁର ହାତଟିକୁ ପାଖକୁ ଟାଣି ଆଣି, ଗଳାରେ ହାରଟିକୁ ଦେଖି) ଏଇ ହାରଟିକୁ ତ ତୁମ ବେକରେ କେବେ ଦେଖି ନ ଥିଲି ! ଭାରି ଭଲ ହୋଇଛି ତ ?

ମଞ୍ଜୁ : (ଶଙ୍କିତ ହୋଇ) ହାତୁଟା ପରା ବୋଉଙ୍କର । କଣ ମନ ପାଇଲା କେଜାଣି । ଆଜି ତାଙ୍କର ଗହଣା ବାକ୍ସରୁ ଏହି ହାରଟି ପିନ୍ଧାଇ ଦେଇଛନ୍ତି ।

ମହେଶ (ହସ ଖେଳାଇ) କଣ ବୋଉ ତୁମ ମା'ଙ୍କର ଭକ୍ତ ପାଲଟି ଗଲେଣି କି ?

ମଞ୍ଜୁ : ନାଇଁ ମ, ଭକ୍ତ କାହିଁକି ହେବେ ? (ଟିକିଏ ରହି) ଯଦିବା ହୁଅନ୍ତି, ସେଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ?

ମହେଶ : ପ୍ରକୃତରେ ଏ ଦୁନିଆରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ତେବେ ବୋଉର ଗୋଟାଏ ଗହଣା ବାକ୍ସ ଥିଲା ବୋଲି ତ ମୋର ଧାରଣା ନ ଥିଲା । ଆଉ ପୁଣି ସେଥିରୁ ଗହଣା କାଢ଼ି ତୁମକୁ ପିନ୍ଧାଇବ, ପାଠଚକ୍ରକୁ ଯିବ ! ତୁମେ କିଛି କିମିଆ କରି ନାହଁ ତ । (ହସି)

ମଞ୍ଜୁ (ହସି) ମୁଁ କାହିଁକି କିମିଆ କରିବି ମ ? ସବୁ ସେଇ ....

ମହେଶ : ଓ ଶ୍ରୀମାଙ୍କ ଦୟାରୁ । ଏଇଆ କହିବାକୁ ଚାହଁ ନା ? ହୁଁ (କ୍ରମେ ଗମ୍ଭୀର ହୋଇ ପଡ଼ିଲା) ମା' - ମା - ମା - ସବୁବେଳେ ସେଇ ଗୋଟିଏ କଥା ।

ମଞ୍ଜୁ (ଶଙ୍କିତ ହୋଇ) ତାହା ହେଲେ କଣ ମୁଁ ଯିବି ନି ?

ମହେଶ (ଅନ୍ୟମନସ୍କ ହୋଇ ଉପରକୁ ଚାହିଁ) ହଁ, ହଁ, ନିଶ୍ଚୟ ଯାଇ ପାର ।

(ନେପଥ୍ୟେ ଭୋଳା - "ମା, ରିକ୍ସା ଆସିଲାଣି ।" ମଞ୍ଜୁ ଟିକିଏ ମହେଶ ଆଡ଼କୁ ଚାହିଁଲା । ସେତେବେଳକୁ ମହେଶ ଅନ୍ୟମନସ୍କ ହୋଇ ପଦଚାରଣ ଆରମ୍ଭ କରିଥାଏ । ମଞ୍ଜୁର ପ୍ରସ୍ଥାନ - କିଛି ସମୟ ପରେ ଭୋଳାର ପ୍ରବେଶ)

ଭୋଳା ବାବୁ - ଆ - ଆପଣଙ୍କର ଯିବାରେ ଡେରି ଅଛି ?

ମହେଶ : ଏଁ, ହଁ ଡେରି ଅଛି । ନିଶ୍ଚିନ୍ତ ମନରେ ନିଜ କୋଠରୀରେ ଯାଇ ଢୁଲାଇ ପାରୁ । ଦରକାର ହେଲେ ଆସିବୁ । (ଭୋଳା ମହେଶକୁ ଲକ୍ଷ୍ୟ କରି କରି ପ୍ରସ୍ଥାନ - ମହେଶ ମନରେ ମଧ ଆଶଙ୍କା ।)

ମୋହନ (ନେପଥ୍ୟେ) ମହେଶ ବାବୁ ଘରେ ଅଛନ୍ତି ?

ମହେଶ : ହଁ, ହଁ ଅଛନ୍ତି, ଆସ ।

ମୋହନ (ନିକଟକୁ ଆସିଲା - ଘରର ଚାରିଆଡ଼େ ପଦଚାରଣ କରି) ବାଃ, ଫାଇନ୍, ସବୁ ଶୁନ୍‌ଶାନ୍ । ଘରେ ତ କେହି ନାହାନ୍ତି । ବିଦେଶୀ ମାର୍କା । ଏକଦମ୍ ଖାଣ୍ଟି ।

ମହେଶ : ମୋହନ ! (ସ୍ୱରରେ ବିରକ୍ତି)

ମୋହନ : (ମୁହଁରେ ଆଙ୍ଗୁଠି ଦେଇ) ପା--ଟି କରି କିଛି ଲାଭ ନାହିଁ । ଟଙ୍କା ଚାହୁଁଛ, ଟଙ୍କା ? ଆଣିଛି - ହେଇ, ଦୁଇ ହଜାର (ପକେଟରୁ ନୋଟ୍ ବିଡ଼ାକ କାଢି ରଖି ଦେଲା ।) ବେଶ୍ ସେତିକି ।

ମହେଶ : ମୋହନ ବାବୁ ! ତୁମର ମନେ ରଖିବା ଉଚିତ, ଏଇଟା ସରକାରୀ ଟଙ୍କା । ମୋର ଅବସ୍ଥା କଣ ହେବ ବୁଝିପାରୁଛ ତ ?

ମୋହନ : ଠିକ୍ ବୁଝିଛି ଭାଇ, ଠିକ୍ ବୁଝିଛି ।

ମହେଶ : ମାନେ ?

ମୋହନ : ସହରରେ ଶିଳ୍ପପତି, ବ୍ୟବସାୟୀଙ୍କର ଅଭାବ ନାହିଁ, ମାତ୍ର ଗୋଟାଏ ଦସ୍ତଖତ୍ !

ମହେଶ : (ବିରକ୍ତି ସହ) ଆଉ ତା ବଦଳରେ ସେମାନେ ଚାହିଁବେ ଲାଇସେନ୍ସ ? ତୁମ ପରି ଅନ୍ୟାୟ ପ୍ରଭାବ ପକାଇବାକୁ ଚାହିଁବେ ସେମାନେ । ଏଇଆ ତ ?

ମୋହନ : ହାଃ - ହାଃ - ହାଃ ଠିକ୍ ବୁଝିଛ । ଏଇଟା ହେଲା ପ୍ରୋବେସନ୍ । ଏତିକିବେଳେ କାମଟା ଭଲ ଭାବରେ ଶିଖି ନିଅ । କିପରି ସରକାରୀ ଟଙ୍କା ଲାଞ୍ଚ ନେଇ କାମ କରିବାକୁ ହୁଏ ।

ମହେଶ : ମୋହନ ବାବୁ !

ମୋହନ : ହାଃ - ହାଃ - ଦେଖୁଛି । ତାହା ତୁମେ ପାରିବ ନାହିଁ । ବେଶ୍ ତ, ଘରେ ତାହାହେଲେ ସୁନା ଥିବ ? ସୁନା ପିଲାଟି ପରି ନେଇ ଯାଅ । ଅନ୍ଧାରୀ ଗଳି । ସେଇ ଅନ୍ଧାରୀ ଗଳି । ମୁଁ ଲୋକ ଠିକ୍ କରିଛି ।

ମହେଶ : ମୋହନ ! ଏ କଣ ? ତୁ ମୋତେ ଥଟ୍ଟା କରୁଛ ? ସରକାରୀ ହାତ ଯେ, ବହୁଦୂର ଲମ୍ବି ପାରେ, ତୁମେ ଭୁଲି ଯାଇଛ ବୋଧହୁଏ ।

ମୋହନ : ଭୁଲିନି ବନ୍ଧୁ, ଭୁଲିନି । କିନ୍ତୁ ସେପରି ଚେଷ୍ଟା କରିବା ଅର୍ଥ ବିପଦକୁ ଡାକି ଆଣିବା । ହାଃ, ହାଃ, ହାଃ, ସେ ଦୁଃସାହସ କରିବ ନାହିଁ ବନ୍ଧୁ ! ସଲାମ୍ ! ମହେଶ ବାବୁ, ସଲାମ୍ । (ପଛେଇ ପଛେଇ ଯିବା) ସଲାମ୍ ଦୋସ୍ତ ! ସଲାମ୍ !!

ମହେଶ : ମୋହନ !

ମୋହନ : ମନେ ରହିଲା ଅନ୍ଧାରୀ ଗଳି । ଟା - ଟା (ପ୍ରସ୍ଥାନ, ମହେଶ ପୂର୍ବାପେକ୍ଷା ଅସ୍ଥିର ହୋଇ ପଦଚାରଣ କଲା । ପରେ ପୁଣି ଚୌକିରେ ବସିଲା । ଟେଲିଫୋନ୍‌ଟା ପୁଣି ଥରେ ବାଜି ଉଠିଲା) ଇଡିଅଟ୍, କିଭଳି ସାଂଘାତିକ ଲୋକ ଏ ମୋହନ ବାବୁ । ଓଃ, ମୁଁ କଣ କରିବି ?

ମହେଶ (ଟେଲିଫୋନ୍ ଧରି) ହାଲୋ - ମୁଁ ମହେଶ କହୁଛି । -- ଆଜ୍ଞା କୁହନ୍ତୁ । ନା ଆଜ୍ଞା, ଆଉ ଟିକିଏ ପରେ ବାହାରିବି । କଣ କହିଲେ ? ଡ୍ରାଇଭର ନାହିଁ ? ମୋର ଅର୍ଜେଣ୍ଟ୍ ଦରକାର - ମୁଁ ପୋଲିସ୍ର ସାହାଯ୍ୟ ଚାହେଁ । ଶୀଘ୍ର ପଠାନ୍ତୁ । ମୁଁ ପରେ ଜଣାଇବି । ଆଚ୍ଛା ହେଉ, ହଁ ହଁ ଯଦି ଦରକାର ହୁଏ, ମୁଁ ପରେ ଜଣାଇ ଦେବି । ଆଜ୍ଞା ନା - ନା - ମୁଁ କୌଣସି ମତେ କାମ ଚଳାଇ ନେବି । -- କଣ କହିଲେ -- ଟଙ୍କା ? .... ମୁଁ କାଲି ସୁଦ୍ଧା ଯେ କୌଣସି ମତେ ବାଣ୍ଟି ପାରିବି । ଆଜ୍ଞା - ଆଜ୍ଞା । ହେଉ । (ଫୋନ୍ ରଖିଦେବା)

ମହେଶ ଟଙ୍କା ! ଓଃ କି ଡେଞ୍ଜେରସ୍ ଲୋକଟା (ମୁଣ୍ଡରେ ହାତ ଦେଇ) ପଚାଶ ହଜାର ! କାଲି ବାଣ୍ଟିବାକୁ ହେବ । ପଚାଶ ହଜାର ! (ଚିନ୍ତିତ ହୋଇ ବସିଲା) ମୁଁ ଭୁଲ୍ କରିଛି । ମସ୍ତବଡ଼ ଭୁଲ୍ । ଆଃ---

(ବାଳ ମୁଠା ମୁଠା କଲା । ମଞ୍ଚ ଅନ୍ଧକାର ହୋଇଗଲା - ପୁଣି ଆଲୋକ ଜଳିବା ସମୟରେ ଦେଖା ଗଲା - ମହେଶ ଘର ସାରା ଅସ୍ଥିର ଭାବେ ପଦଚାରଣ କରିଚାଲିଛି । ଦେଖାଯାଉଛି ଅଧିକ ଚିନ୍ତାଶୀଳ । ପୁଣି ଆଲୋକ ଲିଭିଗଲା । ଝଣ୍ଝଣ୍ ଶବ୍ଦ । ଆଲୋକ ଜଳିବା ପରେ ମହେଶ ଅପରାଧୀ ପରି ଠିଆ ହୋଇଛି । ଧୀରେ ଧୀରେ ଟେବୁଲ୍ ପାଖକୁ ଯାଇ କିଛି ଲେଖିବାକୁ ଚେଷ୍ଟା କଲା ସେ - କେତେକ ଗହଣା ରୁମାଲ୍‌ରେ ବାନ୍ଧିଲା । ସେଗୁଡ଼ିକ କିଛି ସମୟ ଖାଲି ହାତରେ ଧରିଲା - ଆଖି ଛଳଛଳ ହୋଇ ଆସୁଥିଲା ତାର । ମହେଶ ଏଥର ବତୀ ଲିଭାଇ ଦେଲା - କିଛି ସମୟ ପରେ ଡାକିଲା) ଭୋଳା - ଏ ଭୋଳା !

ଭୋଳା (ନେପଥ୍ୟେ) ଯାଉଛି - ଆ-ଆ-ଆଜ୍ଞା।

ମହେଶ : କବାଟ ବନ୍ଦ କର । (ପ୍ରସ୍ଥାନ ପର ମୁହୂର୍ତ୍ତରେ ଶୁଭିଲା କାର୍‌ର ଶବ୍ଦ ମଞ୍ଚ ଅନ୍ଧକାର ।)

## ତୃତୀୟ ଦୃଶ୍ୟ

(ସମୟ ରାତି ଦଶଟା, ବୈଠକ ଘର ପାଖ କୋଠରୀକୁ ପଶି ଆସିଲା ମଞ୍ଜୁ । ସଜା ହୋଇଥିବା ମା'ଙ୍କର ଫଟୋ ନିକଟରେ ପ୍ରଣତି କରି...)

ମଞ୍ଜୁ : ଭୋଳା, ଏ ଭୋଳା ! (ଭୋଳାର ପ୍ରବେଶ) ବାବୁ କେତେବେଳେ ଆସିବେ, କିଛି କହିଛନ୍ତି ?

ଭୋଳା : ନା - ନାଇଁ ତ ମା' ।

ମଞ୍ଜୁ : କଣ ହେଲା, କିଛି କହି ନାହାନ୍ତି !

ଭୋଳା : ନାଇଁ ମା ।

ମଞ୍ଜୁ : ହଉ ଯା । (ଜିନିଷପତ୍ର ସଜାଡ଼ିବାରେ ମନ ଦେବା)

ଭୋଳା : (ଯାଉ ଯାଉ ଫେରିଆସି) ମା - ମା - ମା ।

ମଞ୍ଜୁ : କିରେ କଣ ?

ଭୋଳା : ତୁମେ ବା-ବା-ବାବୁଙ୍କୁ କିଛି କ-କ-କହୁନ ମା ? ବାବୁ ଆମର ....

ମଞ୍ଜୁ : କଣ କହୁଛୁ ?

ଭୋଳା : ହଁ ମା, ତାଙ୍କ କ-କ-କଥାଗୁଡ଼ାକ କେ-କେ-କେମିତି ବେ-ଢଙ୍ଗର ।

ମଞ୍ଜୁ : ସେଥିରୁ ତୁ କଣ ପାଇବୁ ?

ଭୋଳା : ମା, ମୁଁ ଚାକର ମୁଣ୍ଡ । ହେଲେ ମଧ୍ୟ ତ ଏ ଘରର ନମକ ଖାଉଛି । କ-କ-କହିବିନି ? ବାବୁ ପ-ପ-ପରା ଆଜି ଏଇ ଘରେ ବ-ବ-ବସି ନିଶା ଖାଇଲେ !

ମଞ୍ଜୁ : ଭୋଳା !

ଭୋଳା : ହଁ ମା, ବା-ବା-ବାବୁଙ୍କ ନାଁରେ ମୁଁ-ମୁଁ-ମୁଁ କଣ ମିଛ କହିବି ?

ମଞ୍ଜୁ (ଟିକିଏ ଭାବି) ହଉ, ତୁ ଯା ।

ଭୋଳା : (ଯାଉ ଯାଉ ପୁଣି ଫେରି) ମା ।

ମଞ୍ଜୁ : ପୁଣି କଣ ?

ଭୋଳା : ଆଉ ଗୋ-ଗୋ-ଗୋଟିଏ କଥା ମା, ବାବୁ ଆଜି ଯେ-ଯେ-ଯେମିତି ଗଲେ । ଆ-ଆ-ଆଖି ଦୁଇଟା ନାଲି । ମୋ ମନକୁ ପାପ ଛୁଉଁଛି ମା ।

ମଞ୍ଜୁ : (ଦୀର୍ଘ ନିଃଶ୍ୱାସ ପକାଇ) ଆଚ୍ଛା, ତୁ ଯା । ମତେ କିଛି ଭଲ ଲାଗୁନାହିଁ । (ଭୋଳାର ପ୍ରସ୍ଥାନ । ମଞ୍ଜୁ ଚିନ୍ତିତ ମନରେ, ଆସବାବ୍‌ପତ୍ର ସଜାଡୁ ସଜାଡୁ ଡ୍ରେସିଂ ଟେବୁଲ୍ ପାଖରେ ଠିଆ ହେଲା । ଅଜାଣତରେ ତାର ହାତଟା ପଡ଼ିଲା ନୂଆ ହାରଟା ଉପରେ । ମହେଶର ସ୍ୱର - "କିଛି ନାହିଁ, ଦେଖୁଥିଲି, ତୁମେ କେତେ ସୁନ୍ଦର ଦେଖାଯାଉଛ ! ତୁମେ କିଛି କିମିଆ କରିଛ ନା କଣ ?" ମଞ୍ଜୁ ନୀରବରେ ହାତ ଫେରାଇ ଆଣିଲା ବେଳକୁ ସେହି ଟେବୁଲ୍ ଉପରେ ଖଣ୍ଡିଏ ଚିଠି ପଡିଥିଲା । ତାକୁ ଅଜାଣତରେ ଉଠାଇ ଦେବା ପରେ ମହେଶର ହାତଲେଖା କାଗଜ ଖଣ୍ଡିଏ ଉଡ଼ି ତଳେ ପଡ଼ି ଯାଉଥିଲା । ମଞ୍ଜୁ ତାକୁ ଗୋଟାଇ ଆଣି ପଢ଼ିଲା । ଆଖିରେ ତାର ବେଦନା ଆଉ ଆଶଙ୍କା । ଚିଠିରେ ଲେଖା ଥିଲା । ମହେଶର ଭାଷା :

"ମଞ୍ଜୁ, ଅବସ୍ଥା ଚକ୍ରରେ ପଡ଼ି ବୋଉର ସବୁତକ ସୁନା ଗହଣା ନେଇ ଯାଉଛି । ବୋଉକୁ ଜଣାଇବ ନାହିଁ । ମୁଁ ପରେ ମୁକୁଳାଇ ଆଣିବି । -

ତୁମର ମହେଶ"

ମଞ୍ଜୁ : (ଲଥ୍ କରି ବସି ପଡ଼ି) ଓଃ ଏ ତୁମେ କଣ କଲ ? କଣ କଲ ? ଶେଷରେ ବୋଉଙ୍କର ସୁନା ଗହଣା ତକ ମଧ୍ୟ ରହିଲା ନାହିଁ ! ହେ ମା', ଏ ପୁଣି କି ପରୀକ୍ଷା ? (ନିର୍ଜୀବ ପ୍ରାୟ ଫୋଟୋ ପାଖରେ ଖଟର ବାଡ଼କୁ ଧରି ଆଉଜି ପଡ଼ିବା)

ମେନକା (ବିରକ୍ତ ହୋଇ ଡାକି ଡାକି ଆସୁଛନ୍ତି) ବୋହୂ, ହଇ ଲୋ, ଏ ବୋହୂ - କିଲୋ ମୋର ଗହଣାତକ (ପ୍ରବେଶ କରି) ନେଲୁ କୁଆଡ଼େ ? ପେଡ଼ିଟା ଯାକ ଖାଲି ? ମୋ ଭୁଆଷୁଣୀ ବେଳର ପଚାଶ ଭରି ଗହଣା । କେତେ ଅସୁବିଧାରେ ବି ମୁଁ ପଦାକୁ କାଢି ନ ଥିଲି । (ମଞ୍ଜୁ ନୀରବ - ତାର କହିବାର ସମସ୍ତ ଶକ୍ତି ଉଭେଇ ଯାଇଥିଲା ଯେପରି ।)

କିଲୋ, ତୁନି ହୋଇ ଠିଆଟା କଣ ହେଉଛୁ ମ ? ଆଉ କୋଉଠି ରଖିଛୁ କହ । (ମଞ୍ଜୁ ତଥାପି ନୀରବ) ଆଲୋ, ଶୁଭୁନି କି ? ମୋର ସେତକ ଯାକ ଅଳଙ୍କାର କୋଉଠି ରଖିଛୁ କହ ? କାହାକୁ ଦେଇଛୁ କହୁନୁ ? ବୋପା ବିହକେ ଗହଣା ତ ଦେଖି ନ ଥିବୁ । ଆଉ କଣ କରନ୍ତୁ ? ଆହାରେ ଦଇବ, ମୁଁ ପୋଡ଼ାମୁହାଁ କାହିଁକି ସେ ପେଡ଼ିରେ ହାତ ଦେଲି, କେଜାଣି ? ମୋତେ ଦଇବ ଛାଡ଼ିଥିଲା । ମୋ ବୋହୂ ମୁଆଗ ଚୁଲିକି ଯାଉ - ଚାଲି ଯା, ମୋ ଘରୁ (ମାରିବ ଓ ଧକିଆ ଦେଇ ବାହାର କରିଦେବା ।

ଭୋଲା (ପ୍ରବେଶ କରି) ହାଁ, ହାଁ, ମା-ମା-ମାରୁଛ କାହିଁକି ତା-ତା-ତାଙ୍କୁ, ବା-ବା-ବାବୁ ପରା ନିଜେ ସେ ବା-ବା-ବାକ୍ସ, ଖୋ-ଖୋ-ଖୋଲି ଥିଲେ । ମୁଁ ଦେଖିଛି, ମୁଁ ମୁଁ ଭାବିଲି ..... !

ମେନକା (ଲଥି କିନା ବସି ପଡ଼ି) କଣ କହିଲୁ ? ପୁଅ ନିଜେ ଖୋଲିଲା ? ମହୀ ଚୋରି କଲା ଶେଷକୁ ! ହେ ରାଧାଗୋବିନ୍ଦ !!

ଭୋଲା ହଁ ମା, ମୁଁ ଆ-ଆ-ଆଖି ଛୁଉଁଛି । ମୁଁ ମୁଁ ନିଓଜ .....

ମେନକା : (ମୁଣ୍ଡରେ ହାତ ଦେଇ) ମହୀ, ଶେଷକୁ ତୁ ଏଇଆ କଲୁ ! ମୋର ପଚାଶ ଭରି ଗହଣା ନେଇ ଗଲୁ କୁଆଡ଼େ ? (ମଞ୍ଜୁ ମୁଣ୍ଡ ପୋତି ଲୁହ ଗଡାଉଥିଲା)

ଭୋଲା : ମା, ଟି-ଟି-ଟିକିଏ ପୋ-ପୋ-ପୋଲିସ୍‌ରେ ଖବର ଦିଅନ୍ତା କି ?

ମେନକା : କିରେ ତୋ ମୁଣ୍ଡକୁ ପିତ୍ତ ଚଢିଲାଣି କି ? ପୁଅ ଗହଣା ନେଲା ବୋଲି ପୋଲିସ୍‌କୁ ଖବର ଦେବି ? ସବୁ ତ ମୋ କପାଳ ରେ । ... କଣ କଲୁ ରେ ମହୀ ! କାହିଁକି ସେ ଏଇଆ କଲା ? .. ହେ ଠାକୁରେ, ତୁମେ ତାକୁ ସାହା ହୁଅ । ... ଜଗତ୍‌ସିଂହପୁର ଗଲା କି କୁଆଡ଼େ ଗଲା, କେମିତି ଜାଣିବି ? କଣ କଲା ସେତକ ଗହଣା ? ହାଏ ମୋ କପାଳ (କାନ୍ଦିବା) - ହେ ରାଧାଗୋବିନ୍ଦ । ଆଉ ବଦଳିବ ନି ସେ - ଆଉ ବଦଳିବ ନି । ମୁଁ କଣ କରିବି । (ମଞ୍ଜୁ ନୀରବରେ ଠିଆ ହୋଇ ଲୁହ ପୋଛି ବୁଝାଇବାକୁ ଯାଉଥିବା ସମୟରେ ମଞ୍ଚ ଅନ୍ଧକାର ହେଲା ।)

## ପଞ୍ଚମ ଦୃଶ୍ୟ

ନଈ କୂଳ, ସୂର୍ଯ୍ୟ ଅସ୍ତଗାମୀ, ମନୋଜ ନଈ କୂଳେ ଏକାକୀ ଏକ ଲୟରେ ଚାହିଁ ରହିଥିଲା ଦିଗ୍‌ବଳୟ ଆଡ଼େ । ସୁଦୂରରେ ବଂଶୀ ସ୍ୱର, ମନରେ ଭାବନାର ତରଙ୍ଗମାଳା । ମମତାର ଚିଠି ଦେଉଥାଏ ଅସହ୍ୟ ଯନ୍ତ୍ରଣା ! ମମତା ସାନ୍ଧ୍ୟ ଭ୍ରମଣରେ ବାହାରି ମନୋଜକୁ ଲକ୍ଷ୍ୟ କରିଛି - ଉତ୍‌ଫୁଲ୍ଲ ମନରେ । ଧୀରେ ଧୀରେ ଅଲକ୍ଷ୍ୟରେ ମନୋଜ ପାଖକୁ ଆସି ସସ୍ନେହ ସ୍ୱରରେ କହିଛି ....)

ମମତା : ଗୋଧୂଳିର ସ୍ନିଗ୍‌ଧ ଆଲୋକ କେତେ ସୁନ୍ଦର ! (ମନୋଜ ଚମକି ପଡ଼ି) ବିଧୁରା ବଂଶୀ, ଦିଗ୍‌ବଳୟରେ ଅସ୍ତଗାମୀ ସୂର୍ଯ୍ୟ, ଆଉ ଟିକିଏ ପରେ ଦ୍ୱିତୀୟା ଚନ୍ଦ୍ର ଦେଖା ଦେବ, ଦ୍ୱିତୀୟା ଚନ୍ଦ୍ରର ହସ ଭାରି ସୁନ୍ଦର । ନା ?

ମନୋଜ (ମମତାର ବାକ୍ୟବିନ୍ୟାସ ଆଡ଼େ ଚାହିଁ ରହିଥାନ୍ତି ବିମୁଗ୍ଧ ନୟନରେ)

ମମତା ଆରେ ! - ଆପଣ ଏମିତି କ'ଣ ଦେଖୁଛନ୍ତି ? କଥାଟା ଭଲ ଲାଗିଲାନି ବୋଧେ ?

ମନୋଜ (ହସିବା ଓ ଅନ୍ୟମନସ୍କ ହେବା ।)

ମମତା : ମନୋଜବାବୁ, ମନରେ ଭାବନା ଗଭୀର ହେଲେ ଭାଷା ଫୁଟେନା । ଆପଣ କାହା କଥା ଭାବୁଛନ୍ତି ?

ମନୋଜ : ନା - ନା ସେମିତି କିଛି ନୁହେଁ ।

ମମତା : ଆପଣ ଯାହା ଭାବନ୍ତୁ, ମୁଁ କିନ୍ତୁ କହିବି ବୁଦ୍ଧିଜୀବୀ ମାନେ କଳ୍ପନା ବିଳାସୀ ।

ମନୋଜ କଳ୍ପନା ବିଳାସୀ ? ବୁଝି ପାରିଲିନି !

ମମତା : ବୁଝିବାକୁ ଚେଷ୍ଟା କରନ୍ତୁ ! ମାନେ, ନାରୀ ମନର କୋମଳତା ଆପଣ ମାପି ପାରିବେ କିପରି ?

ମନୋଜ (ହସି) ମୁଁ ମନସ୍ତତ୍ତ୍ୱବିଦ୍ ନୁହେଁ ।

ମମତା ମନସ୍ତତ୍ତ୍ୱବିଦ୍ ନ ହୋଇ ପାରନ୍ତି, କିନ୍ତୁ ଦାର୍ଶନିକ ତ ? ମନସ୍ତତ୍ତ୍ୱ ଆଉ ଦର୍ଶନ ଭିତରେ ସମ୍ପର୍କଟା ଯେମିତି ଆତ୍ମା ଆଉ ପରମାତ୍ମା ମଧ୍ୟରେ- କହିଲେ ଭୁଲ ହେବ କି ?

ମନୋଜ : ତମେ ତ କଣ ଅତିଭୌତିକ ଚର୍ଚ୍ଚା କଲଣି । ମୁଁ କିଛି ଚିନ୍ତା କରି ପାରୁନି ।

ମମତା : ଚିନ୍ତା କରିବା ଆବଶ୍ୟକ କଣ ? ମୁଁ କଣ ତୁମ ଚିନ୍ତା ଭିତରେ ସ୍ଥାନ ପାଇନି ?

ମନୋଜ ଦେଖ ମମତା, ମୋ ଚିନ୍ତାଧାରା ଏକ ବିରାଟ ଶୂନ୍ୟତା !

ମମତା : ଶୂନ୍ୟତା ?

ମନୋଜ ହଁ, ଆଉ ସେହି ଶୂନ୍ୟ ମନ୍ଦିରର ଅଧିଷ୍ଠାତ୍ରୀ ହେଉଛନ୍ତି କେବଳ ମା' ? ମୁଁ ତୁମକୁ କିପରି ଭଲ ପାଏ ମୁଁ ଜାଣିନି ।

ମମତା ମା' ? କିନ୍ତୁ ମା'ଙ୍କର ଆରାଧନା କଲେ ତ ମନରେ ଶାନ୍ତି ଆସେ । ମା'ଙ୍କ ପୂଜାରୀ ତୁମେ ଏମିତି ଉଦାସୀନ କାହିଁକି ?

ମନୋଜ କ୍ଷମା କର। କିଛି ମୁଁ କହି ପାରିବିନି । ସେଇଟା ମୋର ସଂପୂର୍ଣ୍ଣ ବ୍ୟକ୍ତିଗତ କଥା । (ଅନ୍ୟମନସ୍କ ହେବା)

ମମତା : ସବୁଟା ସଂପୂର୍ଣ୍ଣ ବ୍ୟକ୍ତିଗତ ହେଲେ ଚଳିବ କେମିତି ? ସେଥିରେ କଣ ଅନ୍ୟ କାହାରି ଭାଗ ନାହିଁ, ରହି ପାରିବ କି ? ମାନେ ମୋର ?

ମନୋଜ (ହସି) ମମତା (ହାତକୁ ଚାପି ଧରିବା, ଉଡି ମଧ୍ୟରେ ଚନ୍ଦ୍ର ଉଇଁଥାଏ)

ମମତା ମନୋଜ !! (ଉଭୟେ ଆତ୍ମବିଭୋର ....)

(ଟିକିଏ ପରେ ଆନନ୍ଦରେ ମମତା ଗାଇ ଲାଗିଲା .... ମନୋଜ ଉପଭୋଗ କରି ଲାଗିଛି ସେଇ ସଂଗୀତ)

ଚନ୍ଦ୍ର ଚକୋର ରାତି -
ନୀଳ ନୀଳ ନୀଳିମାରେ,
ଝିଲିମିଲି ତାରା ତୁଲେ,
ଚକୋରୀ ମନର ଶୂନ୍ୟତା,
ମାପିକି ପାରନା ତୁମେ ।
ଚନ୍ଦ୍ର .......................... (୧)

ସ୍ନେହର ପରଶ ଧାରେ
ଚୁପି ଚୁପି ହସ, ଚୁନା ଚୁନା କଥା
କୋଟି ଯୁଗ ସ୍ୱପ୍ନ ଖେଳେ ।
ଚକୋରୀ ମନର ଶୂନ୍ୟତା
ମାପିକି ପାରନା ତୁମେ ...... (୨)

ସରାଗ ପରଶେ ତାର
ସେନେହ ପୀରତି - ସ୍ମୃତିରେ ଅଧୀରା -
ବିଧୂରା ବଇଁଶୀ ସୁରେ ....
କୁମୁଦିନୀ ହସେ ସରସ ସଲିଳେ
ରହି ଦୂରେ ବହୁ ଦୂରେ ....
ଚକୋରୀ ମନର ଶୂନ୍ୟତା -
ମାପିକି ପାରନା ତୁମେ ।

ଚନ୍ଦ୍ର ଚକୋର ରାତି ....
(ଉଭୟେ ପରସ୍ପର ଉପରେ ଆଉଜି ପଡ଼ିଛନ୍ତି - ମଞ୍ଚ ଅନ୍ଧକାର ।)

(ଯେତେବେଳେ ଆଲୋକ ଜଳି ଉଠିଲା, ଦେଖାଗଲା ପାଠଚକ୍ର ଚାଲିଛି, ଭକ୍ତଗଣଙ୍କ ସମାବେଶ । ପ୍ରବେଶ କଲେ ନବ ପୁତ୍ରବଧୂ ରୂପେ, ବେକରେ ମାଳା, ପାଟ ଶାଢ଼ୀ, ଗହଣା ପରିହିତା ମମତା ଓ ମାଳା ପିନ୍ଧି ବରବେଶରେ ମନୋଜ । ଉଭୟେ ଫୁଲହାର ହାତରେ ଧରି ମା ଓ ଅରବିନ୍ଦଙ୍କୁ ପିନ୍ଧାଇଲେ, ଧୂପ ଜଳାଇଲେ ।

ଡାଃ ମହେନ୍ଦ୍ର : ମାଁ କୃପାମୟୀ ! ମମତା ଓ ମନୋଜ ତୁମରି ସନ୍ତାନ । ତୁମରି ଚରଣ ତଳେ ନିବେଦିତ, ସମର୍ପିତ । ମା, ନବଦମ୍ପତିଙ୍କୁ ଆଶୀର୍ବାଦ କର ମା ! (ମମତା ଓ ମନୋଜ ମୁଣ୍ଡିଆ ମାରିବା) । ଭକ୍ତବୃନ୍ଦ ଧ୍ୟାନସ୍ଥ ହେବା । ମା'ଙ୍କ ମୀରା ମୀରାମ୍ବିକେ ସଙ୍ଗୀତ ପରିବେଷଣ । ଧ୍ୟାନ ପରେ ମିଷ୍ଟାନ୍ନ ବଣ୍ଟନ । ସମସ୍ତେ ଆଶୀର୍ବାଦ କରିବା । ପୂର୍ଣ୍ଣାଙ୍ଗ ଶିକ୍ଷା କେନ୍ଦ୍ରର ପିଲାମାନେ ପ୍ରବେଶ କଲେ । ମମତା ଓ ମନୋଜ ପିଲାମାନଙ୍କୁ ମିଷ୍ଟାନ୍ନ ବଣ୍ଟନ କଲେ ।)

ମନୋଜ : ପିଲାମାନେ ନିଅ ମିଠା ।

ଛାତ୍ରବୃନ୍ଦ (ଥାଙ୍କ୍ ୟୁ କହି ନମସ୍କାର କରିବା ।)

ମନୋଜ : ଏ ତୁମର ମମତା ଅପା । ଆଜିଠାରୁ ସେ ତୁମର ଯତ୍ନ ନେବେ । ତୁମମାନଙ୍କ ଭାର ଗ୍ରହଣ କରିବେ । ବୁଝିଲ । (ଛାତ୍ରବୃନ୍ଦ ନମସ୍କାର କରିବା ।) (ସମସ୍ତେ ଆନନ୍ଦରେ ମା'ଙ୍କୁ ପ୍ରଣାମ କରିବା ସମୟରେ ପଟ୍ଟ ପତନ ।)

## ଷଷ୍ଠ ଦୃଶ୍ୟ

(ମହେଶଙ୍କ ବଙ୍ଗଳା - ବାହାର ଦ୍ୱାରରେ ଶବ୍ଦ । ଭୋଳା ଓ ମେନକା ମଞ୍ଚ ଉପରେ ଅଛନ୍ତି)

ମେନକା : ଦେଖ୍ କିଏ ସେ ? ଯା (ଭୋଳାର ପ୍ରସ୍ଥାନ । ମେନକା ଆଖିରୁ ଲୁହ ପୋଛିଲେ ।)

ଭୋଳା : (ଫେରି ଆସି) ମା, ମା କଲେକ୍ଟର ପଠାଇଛନ୍ତି - ଜଣେ ପୋ-ପୋ-ପୋଲିସ୍ ବାବୁଙ୍କୁ । କ-କ-କଣ ଖବର ବୁ-ବୁ-ବୁଝିବା ପାଇଁ ଆସିଛନ୍ତି ।

| | |
|---|---|
| ମେନକା | ପୋଲିସ୍ ! ଏ ମୁଁ କଣ କରିବି ଲୋ ମା - ଭୋଳା ଚାଲିଯାଇ କିଛି ସମୟ ପରେ ଏସ୍.ଆଇଙ୍କୁ ନେଇ ଫେରିଲା । |
| ଏସ୍.ଆଇ. | ନମସ୍କାର ଆଜ୍ଞା । ମୁଁ ହେଉଛି ଏଠାକାର ଥାନା ସବ୍ ଇନ୍‌ସ୍‌ପେକ୍ଟର । ମୋତେ କଲେକ୍ଟର୍ ପଠାଇଛନ୍ତି । ମହେଶ ବାବୁ କୁଆଡ଼େ ଗଲେ, କିଛି କହିଛନ୍ତି କି ? |
| ମେନକା | କିଲୋ ବୋହୂ, ତୋତେ କିଛି କହିଛି ? (କବାଟ ପାଖରେ ଠିଆ ହୋଇ ମଞ୍ଜୁ ମୁହଁ ହଲାଇ ନା କଲା) ସେ ପରା ଜଗତ୍‌ସିଂହପୁର ଗଲା ? |
| ଏସ୍.ଆଇ. | ହଁ, କଲେକ୍ଟର କହୁଥିଲେ, ତାଙ୍କର ଜଗତ୍‌ସିଂହପୁର ଯିବାର ଥିଲା । କିନ୍ତୁ ମହେଶବାବୁ କୁଆଡ଼େ ଗଲେ ତାଙ୍କୁ ପରେ ଜଣାଇଛନ୍ତି । ଜଗତ୍‌ସିଂହପୁର କାମ ଅନ୍ୟ ଜଣକ ହାତରେ ଦେଇ ସେ ଗୋଟାଏ ଜରୁରୀ କାମରେ କୁଆଡ଼େ ବାହାରି ଗଲେ । ଡେରି ହେଲେ ପୋଲିସ୍ ସାହାଯ୍ୟ ଦେବା ପାଇଁ ଆମ୍ଭମାନଙ୍କୁ କୁହାଯାଇଛି । କଲେକ୍ଟର ଜାଣିବାକୁ ଚାହୁଁଥିଲେ ଯଦି ଘରେ କେହି ଜାଣିଥିବେ ....? |
| ମଞ୍ଜୁ | (ଦେଖାଦେଇ) ନା' ତ କିଛି କହି ନାହାନ୍ତି ? ଏ ପୁଣି କଣ ହେଲା ? ସେ ତେବେ ଗଲେ କୁଆଡ଼େ ? |
| ମେନକା | ମୁଁ ତ କିଛି ବୁଝିପାରୁନି ? କୁଆଡ଼େ ଗଲା ସେ ? ହେ ରାଧାଗୋବିନ୍ଦ ! |
| ଏସ୍.ଆଇ. | ଆପଣମାନେ ବ୍ୟସ୍ତ ହେବେ ନାହିଁ, ମାଉସୀ । ସେ ଏକ ଜରୁରୀ କାମ ହାତକୁ ନେଇଛନ୍ତି । ସେମିତି ଅସୁବିଧା ଯଦି କିଛି ହୁଏ, ନିଶ୍ଚୟ ଆମ ପାଖରେ ଖବର ଆସି ପହଞ୍ଚିବ । ଦରକାର ହେଲେ ଫୋନ୍ ଦ୍ୱାରା ଆପଣଙ୍କୁ ଜଣାଇ ଦେବି । ହୁଏତ ଆଜି ରାତିକ ଭିତରେ ମହେଶବାବୁ ଫେରି ପାରନ୍ତି । ହଉ ଆଜ୍ଞା, ଆସୁଛି, ନମସ୍କାର । ଆପଣ ଜମା ବ୍ୟସ୍ତ ହେବେ ନାହିଁ । (ପ୍ରସ୍ଥାନ - ଭୋଳା ତାଙ୍କ ପଛେ ପଛେ ଗଲା - କବାଟ ବନ୍ଦ କରିବା ପାଇଁ ।) |
| ମେନକା | ହେ ଠାକୁରେ, ଏସବୁ କ'ଣ କଲ ? ହେ ରାଧାଗୋବିନ୍ଦ ! ମୁଁ କଣ କରିବି ? ହେ ପ୍ରଭୁ ! (କାନ୍ଦିବା) |
| ମଞ୍ଜୁ | ଏବେ ପୁଣି କଣ ହେବ ? ହେ ମା' - ତୁମେ ତାଙ୍କୁ ପରିବର୍ତ୍ତନ କର (ମାଙ୍କ ଫୋଟୋକୁ ଚାହିଁ - ପ୍ରାର୍ଥନା କରିବା) |

ଭୋଳା (ଫେରି ଆସି) ମା, ଏ ପୋ-ପୋ-ପୋଲିସ୍ ବାବୁ ଆ-ଆ-ଆସିଥିଲେ । ତାଙ୍କୁ ଗୁପ୍ତରେ ସେ ସୁ-ସୁ-ସୁନା କଥା କ-କ-କହିଲ ନି ?

ମେନକା : ଭୋଳା - ତୁ ଆଉ ମୋତେ ଜଳାନା କହୁଛି । ଖବରଦାର୍ ସେ କଥା ଯେପରି ଆଉ କେହି ନ ଜାଣନ୍ତି । ବୁଝିଲୁ ?

ଭୋଳା : ନା --ନା - ନା - ମା, ହେଇ କାନଧରି କସମ ଖାଇଲି । (ପ୍ରସ୍ଥାନ) ପରେ ପରେ ମେନକା ମଧ ଚାଲିଗଲେ । ମଞ୍ଚ ଅନ୍ଧକାର ହୋଇ ଆସିଲା ।)

(ପୁଣି ଆଲୋକ ଜଳିଉଠିଲା, ମଞ୍ଜୁ ମୁଣ୍ଡରେ ହାତ ଦେଇ ବସିଛି । ରାତି ପ୍ରାୟ ସାଢେ ତିନିଟା । ମହେଶ ତଥାପି ଆସି ନାହିଁ । ଦୁଇ ତିନିଟା କଥା ତା'ମନରେ ଥରକୁ ଥର ପ୍ରତିଧ୍ୱନିତ ହେଉଛି । ''ବୋଉର ପୁଣି ଗୋଟାଏ ଗହଣା ବାକ୍ସ ଥିଲା ? ତମେ କିମିଆ କରିଛ ନା କଣ ?'' ଆଉ ଏସ୍.ଆଇ.ଙ୍କର କଥା - ଜଗତ୍‌ସିଂହପୁର୍ ଯିବାର ଥିଲା । କିନ୍ତୁ ମହେଶବାବୁ କୁଆଡ଼େ ଗଲେ, ତାଙ୍କୁ ପରେ ଜଣାଇଛନ୍ତି । ସେ ଗୋଟାଏ ଜରୁରୀ କାମରେ ବାହାରି ଗଲେ ।)

ମଞ୍ଜୁ : ଓଃ, ହେ ମା, ମୁଁ କଣ କରିବି ? ସତେ କଣ ସେ ଆଉ ଭଲ ବାଟକୁ ଆସିବେ ନାହିଁ ? ହେ ମା' ତାଙ୍କୁ ରକ୍ଷା କର । ତାଙ୍କୁ ମଣିଷ କର ।

ମେନକା (ଆଖି ମଳି ମଳି) କିଲୋ, ମହୀ କଣ ଏ ଯାଏଁ ଫେରିନି ?

ମଞ୍ଜୁ (ଧୀରେ ମୁହଁ ଉଠାଇ ଚାହିଁଲା, କିନ୍ତୁ ପଦେ ହେଲେ କଥା ନ ଥିଲା । ମୁହଁରେ ତାର । )

ମେନକା : ଗଲା, ସବୁ ଗଲା । ଆଉ ବାଟକୁ ଆସିବ ନାହିଁ । କାହାକୁ ଆଉ କହିବି ? ସବୁ ମୋ ଭାଗ୍ୟ ।

ମଞ୍ଜୁ (କଇଁ କଇଁ ହୋଇ କାନ୍ଦିବା) ହେ ମା.......

ମେନକା (ନିକଟକୁ ଯାଇ) କାନ୍ଦିଲେ କ'ଣ ହବ ? ହାତରେ ତ ମୁଠାଏ ଟଙ୍କା ସୁନା ପଡ଼ିଛି । ସେ କଣ ଏବେ ଆଉ ଫେରିବ ? ହୁଁ (ଦୀର୍ଘ ନିଃଶ୍ୱାସ ପକାଇ) ଠାକୁରେ ତୁମେ ହିଁ ଭରସା । ଯା, ମା, ଶୋଇପଡ଼ ।

କେତେବେଳ ଯାଏ ଆଉ ଚେଇଁଥିବୁ । ଏବେ ଆସି ଚାରିଟା ବାଜିବ ନା କ'ଣ ? ହେ ରାଧାଗୋବିନ୍ଦ । (ପ୍ରସ୍ଥାନ)

(ମଞ୍ଚ ପୁଣି ଅନ୍ଧାର ହୋଇ କିଛି ସମୟ ପରେ ଜଳି ଉଠିଛି । ବର୍ତ୍ତମାନ ସକାଳ ହୋଇ ଗଲାଣି । ମଞ୍ଜୁ ରାତି ସାରା ଉଜାଗର ରହି ଖଟ ଉପରେ ମୁଣ୍ଡ ରଖି ଢୁଳାଇ ପଡ଼ିଥାଏ । ମେନକା ଗାଧୋଇ ସାରି ପଶି ଆସିଲେ ।)

ମେନକା କିଲୋ ବୋହୂ ଉଠ । (ମଞ୍ଜୁ ତଥାପି ଉଠିଲା ନାହିଁ - ମେନକା ମଞ୍ଜୁ ଆଡ଼କୁ ଚାହିଁ ଦୀର୍ଘ ନିଃଶ୍ୱାସ ତ୍ୟାଗ କରି ଲୁହ ପୋଛିଲେ, ପୁଣି ଯାଇ ହାତରେ ହଲାଇବା ପୂର୍ବରୁ ଆଖି ପଡ଼ିଲା ମା'ଙ୍କର ଫୋଟୋ ଉପରେ । ଫଟୋ ପାଖରେ ଯାଇ ଟିକିଏ ଠିଆ ହେଲେ - ଲୁହ ପୋଛି କହିଲେ) କେହି ଶୁଣିଲେ ନାହିଁ ? ମା' ନାହିଁ କି ବାପ ନାହିଁ । ଲୋକେ ତ କାଠ ପଥର ପୂଜା କରି ଢେର୍ ଫଳ ପାଉଛନ୍ତି ? ଝିଅଟା କେତେ ଡାକୁଛି..... (ମଞ୍ଜୁକୁ ହଲାଇ) ଉଠ ମା' ଉଠ । ମୁଁ ଟିକିଏ ଗୋପାଳଜୀଙ୍କ ପାଖକୁ ଯିବି । (ମଞ୍ଜୁ ଏଥର ଉଠିଲା - ପଚାରିଲା ଆଖିରେ ଚାହିଁଲା - ମେନକା କିଛି କହିବା ପୂର୍ବରୁ ଫୋନ୍ ବାଜିଲା । ମଞ୍ଜୁ ଧଡ଼ପଡ଼ ହୋଇ ଗଲା ଫୋନ୍ ପାଖକୁ, ରିସିଭର୍ ଉଠାଇଲା)

ମଞ୍ଜୁ ହାଲୋ - ହଁ ହଁ - ମୁଁ ମଞ୍ଜୁ କହୁଛି । ଏଁ ? ଡାକ୍ତରଖାନାରେ? କଣ ହୋଇଛି ? ହାଲୋ - ହାଲୋ - ହାଲୋ । (ଫୋନ୍ ଛାଡ଼ି ଦେବା)

ମେନକା କଣ, କିଏ କହୁଥିଲା ?

ମଞ୍ଜୁ : ଓଃ କଣ ହେଲା - ମୁଁ କିଛି ବୁଝିପାରୁ ନାହିଁ । ଏସ୍,ଆଇ. ଟେଲିଫୋନ୍ କରି କହିଲେ ସେ ଏବେ ଡାକ୍ତରଖାନାରେ ।

ଭୋଳା (ଧଇଁ ସଇଁ ହୋଇ ପଶି ଆସିଲା) ମା'- ମା - ବା-ବା-ବାବୁଙ୍କୁ ଡାକ୍ତରଖାନା ନି-ନି-ନିଆ ହୋଇଛି ।

ମେନକା ତୁ କେମିତି ଜାଣିଲୁ ?

ଭୋଳା : ହଁ ମା, ମୁଁ-ମୁଁ-ମୁଁ ନିଜେ ଦେଖିଲି ପରା ! ବାବୁଙ୍କୁ ଗା-ଗା-ଗାଡ଼ିରେ ନେଉଥିଲେ ।

ମେନକା : କିରେ ତା'ର କଣ ହୋଇଛି ?

ଭୋଳା : ବାଟରେ ପଁ-ପ-ପରା କୁହାକୁହି ହେଉଛନ୍ତି - ବା-ବା-ବାବୁଙ୍କୁ କୁଆଡ଼େ ଗୁ-ଗୁ-ଗୁଳି ହୋଇଛି ।

ମେନକା/ମଞ୍ଜୁ : ଗୁଳି ? (ଆଶ୍ଚର୍ଯ୍ୟ ଓ ଭୟରେ)

ଭୋଳା : ଲୋ-ଲୋ-ଲୋକେ ତ ସେଇଆ କ-କ-କହୁଛନ୍ତି । (ମଞ୍ଜୁ ମୁହଁ ଫେରାଇ ନେଲା)

ମେନକା : ଇଲୋ ମୁଁ କଣ କରିବି ? ହେ ରାଧାଗୋବିନ୍ଦ ! ମୋ ମହୀକୁ ରକ୍ଷା କର ହେ ପ୍ରଭୁ ! --- ଚାଲିଲୁ, ମୁଁ ଯିବି । ମୋ ପିଲାକୁ ଦେଖିବି । (ମଞ୍ଚ ଅନ୍ଧକାର । ..... ଆଲୋକ ହେବା ପରେ ଦେଖାଗଲା - ବାହାରେ ଏ ସମୟରେ ମୋହନବାବୁଙ୍କୁ ହାତକଡ଼ି ପକାଇ ରାସ୍ତାରେ କନଷ୍ଟେବଲ ନେଉଥିବା । ପୋଲିସ୍ ଏସ୍.ଆଇ. ଯାଉଛନ୍ତି । ପୋଲିସ୍ ଭ୍ୟାନ୍ ଚାଲିଛି । ଲୋକମାନେ ଠିଆ ହୋଇ କୁହାକୁହି ହେଉଛନ୍ତି, "କି ଭୟଙ୍କର ଲୋକ ?" (ମଞ୍ଚ ଅନ୍ଧକାର ହେଲା)

## ସପ୍ତମ ଦୃଶ୍ୟ

(ଡାକ୍ତରଖାନା କୋଠରୀ ବାହାରେ ଡାକ୍ତର ମହେନ୍ଦ୍ର ବାବୁ ଓ ମେନକା)

ମେନକା : ମୁଁ ଆଉ କଣ କରିବି ବାପ ? ପୁଅ ତ ତିନି ଦିନ ହେଲା ସେମିତି ପଡି ରହିଲା । ଆଖି ଫିଟାଇ ଚାହିଁଲା ନାହିଁ । ବୋହୂଟା ମଧ୍ୟ ସେମିତି ଦରମରା ହୋଇ ଜଗି ରହିଛି । ପାଟିରେ ଟିକିଏ ପାଣି ଦେଉନି ।

ମହେନ୍ଦ୍ର ବାବୁ : ତୁମେ ବ୍ୟସ୍ତ ହୁଅନି ମାଉସୀ । ଆମ୍ଭେମାନେ ସମସ୍ତେ ଲାଗିଛୁ । ସରକାରୁ ଅଫିସ୍‌ରୁ ଘନ ଘନ ତାଗିଦା ଆସୁଛି । ଏଥିରେ କାହାର ହେଲେ ହେଲା ନାହିଁ ।

ମେନକା : ତୁମେ ସତ କହୁଛ ପୁଅ ? ମହୀ ମୋର ଭଲ ହୋଇଯିବ ? ହେ ରାଧାଗୋବିନ୍ଦ ।

ମହେନ୍ଦ୍ର ବାବୁ : ଠିକ୍ କେଉଁଠି ଆଘାତ ଲାଗିଛି, ଜାଣି ପାରିଲେ ଭଲ ହୋଇ ଯିବାର କୌଣସି ଅସୁବିଧା ହେବନି । ବର୍ତ୍ତମାନ ଏକ୍ସରେ ଫୋଟୋ ପରୀକ୍ଷା କରାଯାଉଛି । ତେବେ ....

ମେନକା : ତେବେ କଣ ମୋତେ ଫିଟାଇ କହୁ ବାପ, ମୁଁ ଆଉ ସହି ପାରିବିନି !

ମହେନ୍ଦ୍ର ବାବୁ : ନା, ମାଉସୀ, ମୁଁ ସେ କଥା କହୁନି । ମୁଁ ଖାଲି ଭାବୁଛି, ଯେଉଁଠି ତୁମେ ଠାକୁରଙ୍କୁ ଏତେ ଡାକୁଛ, ମଞ୍ଜୁ ତାର ସମସ୍ତ ପ୍ରାଣ ଦେଇ ମା'ଙ୍କୁ ଡାକି ଲାଗିଛି, ସେହି କ୍ଷେତ୍ରରେ ବିଶେଷ କିଛି ଅମଙ୍ଗଳ ହେବା ଅସମ୍ଭବ ।

ମେନକା : ତୁମ ତୁଣ୍ଡ ସୁତୁଣ୍ଡ ହେଉ ବାପ । ସତରେ ଠାକୁରେ ଆମ ଗୁହାରି ଶୁଣିବେ ? ହଁ, ଯାଏ, ତେଣେ ବୋହୂଟା ସେମିତି ପଡ଼ିଛି, ତିନି ରାତି ହେଲା ଆଖି କଷା ହେଇନି । ତୁମେ ଟିକିଏ ବାପ ତାକୁ ବୁଝାଇ ଦିଅନ୍ତ । ସେ ଶ୍ରୀମାଙ୍କ ଫୋଟୋ ତଳେ ପଡି ରହିଛି । ଟୋପେ ପାଣି ହେଲେ ପିଅନ୍ତା । କି ଜନମ ପାଇଥିଲା ଯେ ... (କାନ୍ଦିବା)

ମହେନ୍ଦ୍ର ବାବୁ : ଆଚ୍ଛା, ମୁଁ ଟିକିଏ ପରେ ଯାଉଛି । ତୁମେ ବ୍ୟସ୍ତ ହୁଅନି, ମାଉସୀ ।

(ମେନକାଙ୍କର ପ୍ରସ୍ଥାନ ପରେ ମହେନ୍ଦ୍ର ବାବୁ ଏକ୍ସରେ ଫୋଟୋଗୁଡ଼ିକୁ ତନ୍ନ ତନ୍ନ କରି ପରୀକ୍ଷା କରି ଲାଗିଲେ । ମୁହଁରେ ହତାଶାର ସୂଚନା । ଏହି ସମୟରେ ଏସ୍.ଆଇ.ଙ୍କର ପ୍ରବେଶ)

ଏସ୍.ଆଇ. : ନମସ୍କାର ଡାକ୍ତରବାବୁ ।

ମହେନ୍ଦ୍ର ବାବୁ ନମସ୍କାର, ଆସନ୍ତୁ !

ଏସ୍.ଆଇ. : ମହେଶବାବୁଙ୍କର କଣ ଏ ପର୍ଯ୍ୟନ୍ତ ହୋସ୍ ଫେରି ନାହିଁ ?

ମହେନ୍ଦ୍ର ବାବୁ ନା, ବଡ଼ ଦୁଃଖର କଥା ।

ଏସ୍.ଆଇ. : ତିନି ଦିନ ହୋଇଗଲା । ଥରକୁ ଥର ଆଇ.ଜି. ଫୋନ୍ କରି ପଚାରୁଛନ୍ତି । କୌଣସିମତେ ତାଙ୍କୁ ବଞ୍ଚାଇବାକୁ ହେବ । ଏତେ ଚେଷ୍ଟା ସତ୍ତ୍ୱେ ମହେଶ ବାବୁଙ୍କୁ ଗୁଳି ହୋଇଥିବା ବଡ଼ ଦୁଃଖର ବିଷୟ । କଣ, ଏକ୍ସରେ ରିପୋର୍ଟ ଏ ପର୍ଯ୍ୟନ୍ତ ଆସିନି ?

ମହେନ୍ଦ୍ର ବାବୁ : ଦ୍ୱିତୀୟ ଥର ଫୋଟୋ ଉଠା ହୋଇ କଲିକତା ଯାଇଛି । ଆଜି ସନ୍ଧ୍ୟା ସୁଦ୍ଧା ରିପୋର୍ଟ ଆଶା କରୁଛୁ । ତାପରେ ଯାହା କିଛି ଚେଷ୍ଟା କରାଯିବ । (କହି କହି ଆଗକୁ ଆସିବା) ... ...

ଏସ୍.ଆଇ. : ଭଗବାନ କରନ୍ତୁ, ସେ କେମିତି ବଞ୍ଚି ଯାଆନ୍ତୁ । ପୋଲିସ୍ ବିଭାଗରେ ସମସ୍ତଙ୍କ ମୁହଁରେ ପ୍ରଶଂସା । ସେ ଯଦି ମୋହନ ଦାସର ଗ୍ୟାଙ୍ଗ ଭିତରେ ସାହସ କରି ପଶିଯାଇ ନ ଥାନ୍ତେ, ସେ ଦଳ ଆଉ କଣ ସହଜରେ ଧରା ପଡିଥାନ୍ତା ? ଆଉ ଏବେ ଯାହା ସବୁ ପ୍ରମାଣ ମିଳୁଛି - ସେହି ଦଳ ଆଉ କଣ କିଛି ବାକି ରଖିଥାନ୍ତେ ? ଚୋରା ମଦ, ଡ୍ରଗ୍ସ, ବ୍ରାଉନ୍ ସୁଗାର, ଚୋରା ସୁନାରେ ସଂପୃକ୍ତ କାରବାର ଏହା କେବଳ ଗୋଟାଏ ବାହାରିଆ କଥା । ତା ଭିତରେ କେତେକ ବୈଦେଶିକ ଗୁପ୍ତଚର ମଧ୍ୟ ଥିଲେ । ସବୁ ଧରା ପଡିଛନ୍ତି ସେ ତ ଗୋଟାଏ ଦେଶଦ୍ରୋହୀ ବୋଲି ସୂଚନା ମିଳୁଛି ।

ମହେନ୍ଦ୍ର ବାବୁ କଣ କହୁଛନ୍ତି ?

ଏସ୍.ଆଇ. : ରିପୋର୍ଟରୁ ଆମର ବିଶ୍ୱାସ ତ ସେଇଆ । ତା'ଛଡ଼ା ଅନୁମାନ କରାହେଉଛି - ଏହି ଗ୍ୟାଙ୍ଗ୍ କେତେକ ରେଳ ଦୁର୍ଘଟଣା ପାଇଁ ମଧ୍ୟ ଦାୟୀ । ସେମାନଙ୍କ ଠାରୁ ପାୱାରଫୁଲ୍ ବୋମା ସବୁ ଜବତ କରାଯାଇଛି ।

ମହେନ୍ଦ୍ର ବାବୁ : ବଡ଼ ଆଶ୍ଚର୍ଯ୍ୟ କଥା । କିନ୍ତୁ ସେ ସବୁ ମହେଶ ବାବୁ ଜାଣିଲେ କିପରି?

ଏସ୍.ଆଇ. : ତା କେବଳ ମହେଶ ବାବୁ କହି ପାରିବେ । ଆମର ଯାହା ଅନୁମାନ, ସେ ଆଗରୁ ମୋହନ ଦାସଙ୍କୁ ସନ୍ଦେହ କରୁଥିଲେ ଏବଂ କିଛି ଗୋଟାଏ ସୁରାଖ ପାଇଥିଲେ । ସେଦିନ ଗହଣା ବଦଳରେ ଟଙ୍କା ଆଣିବା ଛଳନା କରି ସେ ଡକାଏତ ଗୁହା ଭିତରେ ପଶିଲେ । ଆମେ ଯଦି ଆଉ ଘଣ୍ଟାଏ ଡେରି କରିଥାନ୍ତୁ, ତାହେଲେ ହୁଏତ ମହେଶ ବାବୁଙ୍କୁ ଏପରି ଅବସ୍ଥାରେ ମଧ୍ୟ ଆମେ ଦେଖି ନ ଥାନ୍ତୁ । (ଡକ୍ଟର ମହାନ୍ତିଙ୍କର ପ୍ରବେଶ) ।

ମହେନ୍ଦ୍ର ବାବୁ : ହେଇ, ଡକ୍ଟର ମହାନ୍ତି ଆସିଲେଣି (ଉଭୟେ ଚୌକି ଛାଡ଼ି ଠିଆ ହେବା)

ଏସ୍.ଆଇ. : ନମସ୍କାର ଆଜ୍ଞା !

ଡଃ ମହାନ୍ତି : (ବସିବାକୁ ଇଙ୍ଗିତ କରି) ନମସ୍କାର ! କ'ଣ ?

ଏସ୍.ଆଇ. : ଆଜ୍ଞା, ଆଇ.ଜି. ଫୋନ୍ କରିଥିଲେ .....

ଡଃ ମହାନ୍ତି : (ଦୁଃଖିତ ମନରେ) ହଁ, ଆଇ.ଜି.ମୋ ପାଖକୁ ମଧ୍ୟ ଫୋନ୍ କରିଥିଲେ । ତେବେ କଲିକତାରୁ ରିପୋର୍ଟ ନ ଆସିବା ପର୍ଯ୍ୟନ୍ତ କିଛି କହି ହେଉନି । ବର୍ତ୍ତମାନ ଖାଲି ଅକ୍ସିଜେନ୍ ଦିଆ ଚାଲିଛି । ତେବେ ଏହା ଭିତରେ ଜଣେ ଆମେରିକାନ୍ ସ୍ପେସାଲିଷ୍ଟ ଆସିଛନ୍ତି । ମୁଁ ତାଙ୍କ ସହିତ କଥାବାର୍ତ୍ତା କରିଛି। ସେ ଯଦି କିଛି କରିପାରନ୍ତି । (ନର୍ସର ପ୍ରବେଶ) କଣ ସିଷ୍ଟର୍, ଅବସ୍ଥା କେମିତି ଅଛି ?

ନର୍ସ : ଆଜ୍ଞା, ନାଡ଼ୀର ଗତି ବହୁତ କମି ଆସିଛି ।

ଡଃ ମହାନ୍ତି : କଣ କରାଯିବ ! ଆଉ ଅନ୍ୟ ଉପାୟ ନାହିଁ । ମହେନ୍ଦ୍ର ବାବୁ ଆପଣ ସେହି ଇଞ୍ଜେକ୍ସନ୍‌ଟା ଶୀଘ୍ର ଦେଇ ଦିଅନ୍ତୁ । (ମହେନ୍ଦ୍ର ବାବୁ ଓ ନର୍ସ ତରତର ହୋଇ ଚାଲିଗଲେ ।) ଡଃ ମହାନ୍ତି କିଛି ସମୟ ଚିନ୍ତା କରି ଉଠିଲେ) ଗୁଳି କାଢି ନେବା ଅପେକ୍ଷାକୃତ ସହଜ, କିନ୍ତୁ ଜିପ୍ ଦୁର୍ଘଟଣାରେ ଭାରି ଜୋର୍ ଆଘାତ ଲାଗିଛି । ଆଘାତଟା ଠିକ୍ କେଉଁ ସ୍ଥାନରେ ହୋଇଛି ନ ଜାଣିବା ପର୍ଯ୍ୟନ୍ତ କହି ହେବ ନି - ବିଚାରୀ ମଞ୍ଜୁ ଦେବୀ । (ମଞ୍ଚ ଅନ୍ଧକାର)

# ଶେଷ ଅଙ୍କ

## ପ୍ରଥମ ଦୃଶ୍ୟ

(ରାସ୍ତାରେ ଖବରକାଗଜ ବାଲା ଡାକି ଡାକି ଯାଉଥିଲା)

ହକର : ସମାଜ, ଦୈନିକ ସମାଜ.... ତିନି ଦିନ ଧରି ମହେଶ ବାବୁଙ୍କର ହୋସ୍ ଫେରିନାହିଁ, ଏହାରି ଭିତରେ ଆଉ ଚାରିଜଣ ଡକାୟତଙ୍କର ସନ୍ଧାନ ମିଳିଛି । ପୋଲିସ୍ ଦ୍ୱାରା ସେମାନଙ୍କ ଆଡ୍ଡାସ୍ଥଳୀକୁ ଘେରାଉ ! ସମାଜ, ଦୈନିକ ସମାଜ ନିଅନ୍ତୁ ........ ।

(ମଧୁ ଓ ବାବୁଲାର ପ୍ରବେଶ)

ବାବୁଲା : ଏ - ଏ (ଡାକିଲା ଖବର କାଗଜବାଲାକୁ

ମଧୁ : ଏଁ - ଏ - ସମାଜବାଲା, ଖଣ୍ଡେ କାଗଜ ଦେଲୁ (ସମାଜବାଲା ବାବୁଲାକୁ କାଗଜ ଦେଲା)

ବାବୁଲା : (କାଗଜ ନେଇ) କଣ ହେଲା ତିନିଦିନ ଧରି ମହେଶ ବାବୁଙ୍କର ଚେତା ଆସିନି । ଏ ଡାକ୍ତରଗୁଡ଼ାକ କଣ ଆଉ ଔଷଧ ଦେଉଛନ୍ତି ମ ?

ମଧୁ : ସେମାନେ ଏତେ ଦିନ ଧରି କେମିତି ବଞ୍ଚାଇ ରଖିଛନ୍ତି ସେହି କଥା ଦେଖ ।

ବାବୁଲା : ହଁ, ସେ ମଧ୍ୟ ଗୋଟାଏ କଥା । ଏ ମୋହନ ଦାସଟା ପୁଣି କିଏ ?

ମଧୁ : ସେ ପରା ମହେଶ ବାବୁଙ୍କ ସାଙ୍ଗରେ ଦୋସ୍ତି କରି ସବୁ ଲୁଟି ନେବାକୁ ବସିଥିଲା । କଣ କଣ ଲେଖା ହୋଇଛି ପଢ଼ିଲ ?

ବାବୁଲା : ଓଃ ବାବା - ଏକାବେଳକେ ଦୁଇ କଲମ୍ । ଆରେ ଓହ, ଏଥିରେ ତ କଣ ତା ଫୋଟୋ ବାହାରିଛି ? ଏଇଟାକୁ କେଉଁଠି ଦେଖି ଥିଲା ପରି ଲାଗୁଛି । ମହେଶ ବାବୁଙ୍କ ସାଙ୍ଗରେ ଯାଉଥିଲା ନା କଣ ?

ମଧୁ : ଆରେ ବାପ୍‌ରେ ! ମୋହନ ଦାସ ଗୋଟାଏ ଦେଶ ଦ୍ରୋହୀ ! ତାର ଗୋଟାଏ ଗ୍ୟାଙ୍ଗ୍ ଏଣେ ଚୋରା ମଦ କାରବାର - ଆଉ ଚୋରା ସୁନା, ଡ୍ରଗ୍‌ସ (ଖବରକାଗଜ ପଢ଼ି) ମହେଶବାବୁଙ୍କୁ ତ ତଳିତଳାନ୍ତ କରି ଦେଇ ଥାନ୍ତା ।

ହକର : ଆଜ୍ଞା । ମୋ ପଇସାଟା ଦେଇ ଦିଅନ୍ତୁ ।

ବାବୁଲା : ଆରେ ହେ, ଦେଖିଲ ? କିରେ ପଇସା ନ ଦେଇ ଆମେ ସବୁ ଖବରକାଗଜ ପଢ଼ିଲେ କେମିତି ? ଆରେ ଏଇଟା ଗୋଟାଏ ଭଲ କଥା ନା ? (ମଧୁ ହସିଲା) ହଉ ନେ ନେଁ । (ପଇସା ଦେଇ ଦୁହେଁ ଖବରକାଗଜ ପଢ଼ିବା)

ହକର : ସମାଜ, ଦୈନିକ ସମାଜ ..... (ପ୍ରସ୍ଥାନ ଓ ମଞ୍ଚ ଅନ୍ଧାର)

## ତୃତୀୟ ଦୃଶ୍ୟ

(ମଞ୍ଚ ଆଲୋକିତ ହେବା ପରେ ଦେଖାଗଲା ରୋଗୀର କକ୍ଷ । ଖଟ ଉପରେ ଶୋଇ ରହିଥାଏ ମହେଶ । ମୁହଁରେ ଅମ୍ଳଜାନ ପାଇପ୍ । ଏଣେ ରକ୍ତ ଶିଶିରୁ ରକ୍ତ ଅଧା ଶେଷ ହୋଇଥାଏ । ପାଖରେ ମଞ୍ଜୁ । ମୁଖ ମଳିନ । ଟେବୁଲ୍ ଉପରେ ରଖା ହୋଇଥାଏ ଶ୍ରୀମା'ଙ୍କର ଫୋଟୋ । ମଞ୍ଜୁ ନିବିଷ୍ଟ ମନରେ ଚାହିଁ ରହିଥାଏ ସେହି ଫୋଟୋ ଆଡ଼କୁ !

କୋଠରୀ ଭିତରେ ଏକ ନୀରବତା, ଡାକ୍ତର ମହେନ୍ଦ୍ର ବାବୁ କାନ୍ଥରେ ଥିବା ଚାର୍ଟ ଆଣି ପରୀକ୍ଷା କରୁଥାନ୍ତି । ନର୍ସ ମହେଶର ନାଡ଼ୀର ଗତି ଏବଂ ବ୍ଲଡ୍ ପ୍ରେସର ପରୀକ୍ଷା କରୁଛନ୍ତି । ନର୍ସର କପାଳରେ ଅଶଙ୍କା । ମହେଶର ମୁହଁକୁ ଲକ୍ଷ୍ୟ କରି ସେ ଆଗେଇ ଗଲା ମହେନ୍ଦ୍ର ବାବୁଙ୍କ ପାଖକୁ । ଚାର୍ଟ ତଳେ କିଛି ଗୋଟାଏ ସଙ୍କେତ ଦେଲା । ମହେନ୍ଦ୍ର ବାବୁଙ୍କ ମୁହଁରେ ଦେଖା ଗଲା ବିସ୍ମୟ । ବ୍ୟସ୍ତ ହୋଇ ପଡ଼ିଲେ ସେ । ନର୍ସ କିଛି ଗୋଟାଏ କହିବାକୁ ଯାଉ ଥିଲା । ମହେନ୍ଦ୍ର ବାବୁ ତାକୁ ଚୁପ୍ ରହିବାକୁ ଇଙ୍ଗିତ ଦେଲେ ଏବଂ ମଞ୍ଜୁ ଆଡ଼କୁ ଦେଖାଇଲେ ।

ମଞ୍ଜୁ ନିବିଷ୍ଟ ଚିତ୍ତରେ ତଥାପି ମା'ଙ୍କ ଫୋଟୋ ଆଡ଼କୁ ଚାହିଁ ରହିଥାଏ ! ମହେନ୍ଦ୍ର ବାବୁ ଅନୁଚ୍ଚ ସ୍ୱରରେ କହିଲେ - ନର୍ସ ଦ୍ରୁତ ପଦରେ ଚାଲିଗଲା ଡଃ ମହାନ୍ତଙ୍କୁ ଡାକି ଆଣିବାକୁ । ଟିକେ ପରେ ନର୍ସ ବ୍ୟଗ୍ରଭାବେ ଫେରି ଆସିଲା । ପରେ ପରେ ଚଞ୍ଚଳ ପଦକ୍ଷେପରେ ଆସିଲେ ଡଃ ମହାନ୍ତି ଏବଂ ଜଣେ ବେହେରା । ଏମାନଙ୍କର ଆଗମନରେ ମଞ୍ଜୁର ଧ୍ୟାନ ଭଗ୍ନ ହେଲା । ଲକ୍ଷ୍ୟ କଲା - ସମସ୍ତଙ୍କ ମନରେ ଏକ ବ୍ୟସ୍ତତା - ତାର ମୁହଁରେ ଆଶଙ୍କାର ଭାବ !)

ମଞ୍ଜୁ : କଣ ହେଲା, କଣ ହୋଇଛି ଡାକ୍ତର ମହାନ୍ତି ?

(ଡଃ ମହାନ୍ତି କେବଳ ଇଙ୍ଗିତରେ ନୀରବ ରହିବାକୁ କହି ମହେଶର ନାଡ଼ୀ ଦେଖିଲେ, ହାର୍ଟ ପରୀକ୍ଷା କଲେ । ତା'ପରେ ହାତଟିକୁ ଧୀର ଭାବେ ଥୋଇ ଦେଇ ବିଷଣ୍ଣ ଭାବେ ଠିଆ ହେଲେ । ଓଠର ସଞ୍ଚାଳନ ଦ୍ୱାରା ମହେନ୍ଦ୍ର ବାବୁଙ୍କୁ ଇଙ୍ଗିତ ଦେଲେ - ଆଉ ଆଶା ନାହିଁ ।)

ଡଃ ମହାନ୍ତି : (ମଞ୍ଜୁର ପିଠିକୁ ଥାପୁଡ଼ାଇ) ବ୍ୟସ୍ତ ହୁଅନ୍ତୁନି ମଞ୍ଜୁ ଦେବୀ । (ଇଙ୍ଗିତ ଦେଲେ - ରକ୍ତଟା କାଢ଼ି ନେବା ପାଇଁ - ନର୍ସ ରକ୍ତ ନଳୀଟା କାଢ଼ି ନେଲା - ପରେ ପରେ ଅମ୍ଳଜାନ ନଳୀଟା ମଧ୍ୟ କାଢ଼ି ନିଆଗଲା) ତାଙ୍କର ମା'ଙ୍କୁ ଟିକିଏ ଡାକି ଦିଅ ।

ମଞ୍ଜୁ : କଣ ହେଲା ଡକ୍ଟର ମହାନ୍ତି ? କଣ ହେଲା କୁହନ୍ତୁ । ମୋତେ କହିବେ ନାହିଁ ? ଓଃ ହେ ମା କଣ କଲ ? (ମହେନ୍ଦ୍ର ବାବୁ ମଞ୍ଜୁ କାନ୍ଧରେ ମୁହୂର୍ତ୍ତକ ପାଇଁ ହାତ ରଖିଲେ ।)

ଡାଃ ମହାନ୍ତି : ନା କିଛି ନୁହେଁ - ଧୈର୍ଯ୍ୟ ରଖନ୍ତୁ ମଞ୍ଜୁ ଦେବୀ । (ପ୍ରସ୍ଥାନ)

ମହେନ୍ଦ୍ର ବାବୁ : ସ୍ଥିର ହୁଅ ମଞ୍ଜୁ । ମୁଁ ଏହିକ୍ଷଣି ମାଉସୀଙ୍କୁ ଖବର ଦେଉଛି । (ବ୍ୟଗ୍ରଭାବେ ପ୍ରସ୍ଥାନ - ପରେ ପରେ ନର୍ସ ମହେଶର ମୁହଁରେ ଚାଦର ଘୋଡ଼ାଇ ଦେଲା । ମଞ୍ଜୁ ଚମକି ଉଠିଲା ! ଏଁ ! ତାର ଆଶଙ୍କା କଣ ସତ୍ୟରେ ପରିଣତ ହୋଇଛି ?)

ମଞ୍ଜୁ : ଓଃ ମା ! ଏ ପୁଣି କଣ କଲ ? ଓଃ ! ଓଃ ! ମୁଁ କଣ କରିବି !

(ମହେଶର ଛାତି ଉପରେ ପଡ଼ି କାନ୍ଦବାକୁ ଲାଗିଲା । ନର୍ସ ସେତେବେଳେ ରୋଗୀର ଚାର୍ଟ ପ୍ରଭୃତି ଯଥା ସ୍ଥାନରେ ରଖୁଥିଲା । ନର୍ସ ମଞ୍ଜୁକୁ ଉଠାଇ ବୁଝାଇଲା - 'ବ୍ୟସ୍ତ ହୁଅନି ମା' । (କିଛି କ୍ଷଣ ପରେ - ମଞ୍ଜୁ ଧୀରେ ଧୀରେ ମୁଣ୍ଡ ଟେକିଲା । ଆଖିରେ ଉଚ୍ଛ୍ୱସିତ ଲୁହ ! ନିଃସହାୟ ଦୃଷ୍ଟି ! ଦେଖିଲା ସାମନାରେ ମା'ଙ୍କର ଫୋଟୋ ।)

ମଞ୍ଜୁ : ହେ ମା -- ମା ଏକ କଣ କଲ ? ତୁମେ କଣ ଏଇଆ ଚାହୁଁଥିଲ ମା ? ମୁଁ କି ଦୋଷ କଲି ମା ? ମୋତେ କାହିଁକି ଏ ଶାସ୍ତି ଦେଲ ? (ନର୍ସ ରକ୍ତି ନଳୀ ନେଇ ଚାଲିଗଲା । ପରେ ପରେ ମଞ୍ଜୁ ପାଗଳିନୀ ପରି ଉଠି ଧାଇ ଯାଇଁ ଧଡ଼କିନା ରୁମ୍‌ର କବାଟଟା ବନ୍ଦ କରି ଦେଲା) ।

ମଞ୍ଜୁ : ନା, ନା ତାଙ୍କୁ କେହି ନେଇ ପାରିବେ ନି ମୋ ପାଖରୁ । ତାଙ୍କୁ ଛାଡ଼ି ମୁଁ ବଞ୍ଚି ପାରି ବିନି !! (ଆଖିରେ ଏକ ବିହ୍ୱଳ ଦୃଷ୍ଟି, ଲୁଗାପଟା ଅସଂଯତ - ନିଃଶ୍ୱାସର ପ୍ରଖରତା ! ପୁଣି ଛୁଟି ଆସିଲା ମହେଶ ପାଖକୁ । ମହେଶର ମୁହଁରୁ ଚାଦରଟା କାଢ଼ି ତାକୁ ଦେଖିଲା । ତାର ମନରେ ସ୍ନେହ, ପ୍ରେମ ଓ କରୁଣତା ବଢ଼ି ଚାଲିଥାଏ । ମୁହଁକୁ ତିନି ଚାରି ଥର ଆଉଁସି ଦେବା

ପରେ ତା'ର କୋହ ଆହୁରି ବଢିଗଲା । କଇଁ କିଁ ହୋଇ କାନ୍ଦିଲା, ପୁଣି ତାର ଦୃଷ୍ଟି ପଡ଼ିଲା ମା'ଙ୍କ ଉପରେ । ଏଥର ସେ ଝଡ଼ ପରି ଛୁଟି ଚାଲିଲା - ମା'ଙ୍କ ଫୋଟୋ ପାଖକୁ)

ମଞ୍ଜୁ : (ପାଗଳି ପରି) ଓଃ ମା, ଏତେ-ଏତେ ନିଷ୍ଠୁର ହୋଇପାରିଲ ତମେ ? ମୋର ଆଉ କ'ଣ ରଖିଲ ? ମୋର ଆଉ କ'ଣ ରଖିଲ ମା ? ମା, ମା (କଇଁ କଇଁ ହୋଇ କାନ୍ଦିବା - ହଠାତ୍ ମୁଣ୍ଡ ବାଡ଼େଇ ସଂଜ୍ଞାହୀନ ହୋଇ ପଡିଲା । ମଞ୍ଚ ଅନ୍ଧକାର ହୋଇଗଲା ।)

(ଦେଖାଗଲା ଏକ ଅସ୍ପଷ୍ଟ ଆଲୋକ ... ।) କ୍ରମଶଃ ଆଲୋକ ଉଜ୍ଜ୍ୱଳତର ହୋଇ ଉଠିଲା । ପୁଞ୍ଜୀଭୂତ ଶୁଭ୍ର ଆଲୋକ ରଶ୍ମି ଦେଖା ଦେଲା ମା'ଙ୍କର ଫୋଟୋ ଉପରେ ...। ସେଥିରୁ ଝରି ଆସିଲା ଏକ ଶୁଭ୍ର ଆଲୋକର ଉଜ୍ଜ୍ୱଳ ରେଖା ... । ତାହା କ୍ରମଶଃ ମହେଶର ଶରୀର ଉପରେ ଖେଳିବାକୁ ଲାଗିଲା ... ! ଏହି ସମୟରେ କିଛି ମୁହୂର୍ତ୍ତ ପାଇଁ ଦେଖା ଦେଲା ସେହି ଫୋଟୋ ବଦଳରେ ମା'ଙ୍କର ଫୋଟୋରୁ ଏକ ଝାପ୍ସା ଉଜ୍ଜ୍ୱଳ ପ୍ରତିମୂର୍ତ୍ତି ଘର ସାରା ଆଲୋକର ଝରଣା ... । କୃପାମୟୀ ଜଗତ୍‌ଜନନୀ ମା'ଙ୍କ ଆଶୀର୍ବାଦ ... । (ନେପଥ୍ୟେ) ନର୍ସ - କବାଟ ଖୋଲନ୍ତୁ ମଞ୍ଜୁ ଦେବୀ !

ମହେନ୍ଦ୍ର ବାବୁ ମଞ୍ଜୁ ! କବାଟ ଖୋଲ ।

(କବାଟରେ ଠକ୍ ଠକ୍ ଶବ୍ଦ ! ପରେ ପରେ କବାଟ ଭଙ୍ଗା ହେବାର ଶବ୍ଦ ସମସ୍ତେ ଡଃ ମହାନ୍ତିଙ୍କ ସହିତ ପଶି ଆସିଲେ ଘର ଭିତରକୁ । ସମଗ୍ର କୋଠରୀରେ ଖେଳି ବୁଲୁଥାଏ ଏକ ସୁଗନ୍ଧ ! ମା'ଙ୍କର ପ୍ରତିମୂର୍ତ୍ତି ଲିଭି ଯାଇଥାଏ । ତଥାପି କିଛି ଆଲୋକ ମହେଶଙ୍କ ଉପରେ ଖେଳି ବୁଲୁଥାଏ । କି ଉଜ୍ଜ୍ୱଳ ଓ ଜ୍ୟୋତିର୍ମୟ ସେ ଆଲୋକ ଧାରା !!! ସମସ୍ତେ ପ୍ରଣାମ କଲେ ! (ହାତ ଯୋଡ଼ି) ସମସ୍ତଙ୍କ ମୁହଁରେ ବିସ୍ମୟ !!!

ଡଃ ମହାନ୍ତି : ଆସି ହାର୍ଟରେ ଷ୍ଟେଥିସ୍କୋପ୍ ଦେଇ ନାଡ଼ୀ ପରୀକ୍ଷା କଲେ । (ନର୍ସଙ୍କୁ ସାଲାଇନ୍ ଆଣିବା ପାଇଁ ବରାଦ କଲେ । ମହେନ୍ଦ୍ର ବାବୁ ମଧ୍ୟ ବ୍ଲଡ଼୍ ପ୍ରେସର୍ ଦେଖି ଲାଗିଲେ !!

ଡା ମହାନ୍ତି : ଆଶ୍ଚର୍ଯ୍ୟ ! ମହେଶ ବାବୁଙ୍କ ହୋସ୍ ଫେରି ଆସିଲା କିପରି ? ହାର୍ଟର ଗତି ତ ସୁସ୍ଥ ଶରୀର ପରି ନର୍ମାଲ୍ । (ଆଶ୍ଚର୍ଯ୍ୟ ହୋଇ ପଡ଼ିଲେ ଉଭୟେ)

ମହେନ୍ଦ୍ର ବାବୁ : ଏ ସବୁ ମା'ଙ୍କର ଅପାର କରୁଣା । ମୁଁ ଏଭଳି କିଛି ଆଶା କରୁଥିଲି । ମଞ୍ଜୁର ନିଷ୍ଠା, ଭକ୍ତି ଓ ସମର୍ପଣ ଫଳରେ ଏହା ସମ୍ଭବ ହେଲା ।

ଡା ମହାନ୍ତି : ଜଗତ୍ ଜନନୀ ମା'ଙ୍କର କିଭଳି କରୁଣା ! ମଞ୍ଜୁ ଦେବୀଙ୍କୁ ଏଥର ଉଠାଇବାକୁ ପଡ଼ିବ । ଆଖିରେ ଆନନ୍ଦାଶ୍ରୁ !! (ମଞ୍ଜୁ ପାଖକୁ ଯାଇ) ମା ମଞ୍ଜୁ ! ଉଠ । ଉଠ ମା । ମହେଶ ବାବୁଙ୍କ ଚେତା ଫେରି ଆସିଛି । ଭୟ କରିବାର କିଛି ନାହିଁ (ହଲାଇ ଡାକିବା । ନର୍ସ ସାଲାଇନ୍ ଆଣି ଲଗାଇଲା ।)

ମଞ୍ଜୁ (ଉଠି ବିହ୍ୱଳ ଭାବେ) ମା - ମା - କାହିଁ, କାହିଁ କେଉଁଠି ସେ ? (ବ୍ୟସ୍ତ ହୋଇ ମହେଶ ପାଖକୁ ଯିବା ।)

ଡା ମହାନ୍ତି : (ଅଟକାଇ ଦେଲେ ମଞ୍ଜୁକୁ) ଆଃ, ଧୀରେ ଧୀରେ ! (କିଛି ସମୟ ପରେ ... ସମସ୍ତେ ଠିଆହୋଇ ଅପେକ୍ଷା କରିବା ।)

ମହେଶ ଓଃ ! ଓଃ ! ମଞ୍ଜୁ, ମଞ୍ଜୁ !

ମଞ୍ଜୁ (ଆନନ୍ଦିତ ହୋଇ) ମୁଁ ଏଇଠି । ତୁମ ପାଖରେ ।

ମହେଶ : (ପୁନର୍ବାର ଅଚେତ ହୋଇ ପଡିବା ।)

ଡା ମହାନ୍ତି (ପୁନର୍ବାର ପରୀକ୍ଷା କରିବାକୁ ଲାଗିଲେ !)

ମହେନ୍ଦ୍ର ବାବୁ : (ଖୁସି ହୋଇ ମଞ୍ଜୁର ପିଠି ଥାପୁଡାଇଲେ ।)

ଡା ମହାନ୍ତି : କିଛି ବ୍ୟସ୍ତ ହୁଅନ୍ତୁନି ମଞ୍ଜୁ ଦେବୀ । ମହେଶ ବାବୁ ବର୍ତ୍ତମାନ ସଂପୂର୍ଣ୍ଣ ସୁସ୍ଥ । (ପିଠି ଥାପୁଡାଇ ପ୍ରସ୍ଥାନ ।)

ମହେନ୍ଦ୍ର ବାବୁ ହେ ମା' ! ତୁମେ ହିଁ ଭରସା । ବ୍ୟସ୍ତ ହୁଅନି ମା । ସବୁ ଠିକ୍ ହୋଇଯିବ । ମୁଁ ଆସେ । (ପ୍ରସ୍ଥାନ - ମଞ୍ଚ ଅନ୍ଧକାର ହେବା)

## ଚତୁର୍ଥ ଦୃଶ୍ୟ

(ମଞ୍ଚ ଆଲୋକିତ ହେବା ପରେ ଦେଖାଗଲା - ମହେଶ ଶେଯ ପାଖରେ ମଞ୍ଜୁ ବସିଛି)

ମହେଶ : ମଞ୍ଜୁ ! ମଞ୍ଜୁ !

ମଞ୍ଜୁ : ଏଁ ? କଣ କହୁଛ ? (ଆଉଁସିବା)

ମହେଶ : (କିଛି ସମୟ ପରେ) ଏଁ, ହଁ ତମେ ଟିକିଏ ପାଖକୁ ଆସ । ଟିକିଏ ପାଣି । (ଅବଶ ଭାବରେ ମଞ୍ଜୁ ପାଣି ଗ୍ଲାସ୍ ଆଣି ପାଖରେ ବସିଲା । ମହେଶ ପାଣି ପିଇସାରି ମଞ୍ଜୁକୁ ଚାହିଁଲା) ଓଃ ! (ଅବଶ ହାତ ମଞ୍ଜୁ ଆଡ଼କୁ ବଢାଇଦେଲା । ମଞ୍ଜୁ ତା'ର ହାତ ପାପୁଲି ଆଉଁସିବାକୁ ଲାଗିଲା) ହଁ, ଶୁଣିବ ମଞ୍ଜୁ ... ମୁଁ, ମୁଁ ଗୋଟିଏ ସ୍ୱପ୍ନ ଦେଖୁଛି !

ମଞ୍ଜୁ : କି ସ୍ୱପ୍ନ ? ଥାଉ ପରେ କହିବ - ଶୋଇ ପଡ଼ ।

ମହେଶ : ନା, ନା, ମୋତେ କହିବାକୁ ଦିଅ । କେତେ ବେଳେ ଦେଖିଲି ତା' ମୋର ମନେ ନାହିଁ । ତେବେ ସ୍ୱପ୍ନଟି ଏତେ ସୁନ୍ଦର ! ମୁଁ କଳ୍ପନା ମଧ୍ୟ କରି ପାରୁନି । (ଆଖି ବନ୍ଦ କରିବା)

ମଞ୍ଜୁ : ଶୋଇ ପଡ଼ । ତୁମେ ଭାରି ଅବଶ ହୋଇ ପଡିଛ - ଉଠ ନି ।

ମହେଶ : (ଆଖି ଖୋଲି) ଏଁ, ନା ନା ତୁମକୁ ନିଶ୍ଚୟ କହିବି ... ଆଃ, କି ସୁନ୍ଦର ସ୍ୱପ୍ନ!! ମୁଁ ଦେଖିଲି ... ମୁଁ ଦେଖିଲି .... ଆଲୋକର ଅସଂଖ୍ୟ ତରଙ୍ଗମାଳା !! ତାରି ଭିତରେ ପ୍ରସ୍ଫୁଟିତ ଶ୍ୱେତ ଗୋଲାପ ପୁଞ୍ଜ ! ସେହି ଭିତରୁ ବାହାରି ଆସିଲେ ଶ୍ୱେତବସ୍ତ୍ର ପରିହିତା ଜ୍ୟୋତିର୍ମୟୀ ଜଣେ ବୃଦ୍ଧା ! (ଆଖି ବନ୍ଦ ହୋଇଗଲା ମହେଶର)

ମଞ୍ଜୁ : ଏଁ, କଣ କହିଲ ? (ଆଶ୍ଚର୍ଯ୍ୟ ହୋଇ)

ମହେଶ : (କିଛି ସମୟ ପରେ ଚାହିଁ) ଏଁ, ହଁ, ହଁ ମୋର ଠିକ୍ ମନେ ଅଛି - ବୃଦ୍ଧା ଜଣକ ମୋର ମୁଣ୍ଡ ପାଖରେ ବସି ମୋର ସମଗ୍ର ଶରୀର ସ୍ପର୍ଶ କରି ଚାଲିଗଲେ !! ....

ମଞ୍ଜୁ : ସତରେ !

ମହେଶ : ଆଃ, କି ସ୍ୱର୍ଗୀୟ ସେ ସ୍ପର୍ଶ !! (ଆଖି ବନ୍ଦ କରିବା - ମଞ୍ଜୁ ଆଖିରେ ଆନନ୍ଦାଶ୍ରୁ !) ମଞ୍ଜୁ ! ସତରେ କଣ ସେ ତୁମରି ମା ?

ମଞ୍ଜୁ : ନିଶ୍ଚୟ ! ତାଙ୍କ ଛଡ଼ା ଆଉ କିଏ ହୋଇ ପାରେ ?

ମହେଶ : କିନ୍ତୁ, ଏ ଅଭାଗା ପ୍ରତି ଏତେ କରୁଣା କାହିଁକି ?

ମଞ୍ଜୁ : (ଆଖିରୁ ଲୁହ ପୋଛି ମହେଶର କପାଳକୁ ଆଉଁସିବା) ସେ ପରା ଅପାର କରୁଣାମୟୀ ମା' । ସେ ତୁମ ପାଖେ ପାଖେ ଅଛନ୍ତି ।

ମହେଶ : ମୁଁ ତୁମକୁ ବହୁତ କଷ୍ଟ ଦେଇଛି - ମଞ୍ଜୁ ! ଅତୀତଟା ମୋ ପକ୍ଷରେ କେତେ ଅନ୍ଧକାରମୟ ଥିଲା ସତରେ !

ମଞ୍ଜୁ : ଛି, ତୁମର ଦେହ ଭଲ ନାହିଁ । ଅତୀତ କଥା ଭାବି ବ୍ୟସ୍ତ ହୁଅନି । ଭୁଲିଯାଅ । ମା'ଙ୍କୁ ସବୁ କିଛି ସମର୍ପଣ କରି ଦିଅ । ସେ ହିଁ ରକ୍ଷା କରିବେ । ସେ ପରା କରୁଣାମୟୀ !

ମହେଶ : ନା ମଞ୍ଜୁ, ମୁଁ ଏତେ ହୃଦୟହୀନ ନୁହେଁ । ମୁଁ ଆଉ ଜୀବନରେ କେବେ ଭୁଲ୍ କରିବିନି ମଞ୍ଜୁ - ମୁଁ ଆଉ ଭୁଲ୍ କରିବିନି !

ମଞ୍ଜୁ (ପାଟିରେ ହାତ ଦେଇ) ଆଉ - ଶୋଇ ପଡ଼, ବ୍ୟସ୍ତ ହୁଅନି, ମା'ଙ୍କ ଦୟାରୁ ତୁମେ ଯେ ମୋ ପାଖକୁ ଫେରି ଆସିଛ, ସେ ମୋର ଯଥେଷ୍ଟ । ଅତୀତ କଥା ଭାବି ଅଯଥା ମନରେ କଷ୍ଟ ଆଣନି । ଦେଖ ତ ମା'ଙ୍କ ଫୋଟୋକୁ । ସେ କିପରି ହସୁଛନ୍ତି ! (ମଞ୍ଜୁ ଆଖିରେ ଆନନ୍ଦାଶ୍ରୁ । ମହେଶ ଚକ୍ଷୁ ପ୍ରସାର କରି ଚାହିଁବା, ଧୀରେ ଧୀରେ ହାତ ଟେକି ପ୍ରଣାମ କଲା । (ମଞ୍ଚ ଅନ୍ଧକାର)

# ଚତୁର୍ଥ ଦୃଶ୍ୟ

(ମହେଶର ଘର - ପାଠଚକ୍ର - ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କ ଫୋଟୋ ନିକଟରେ ରାଧାକୃଷ୍ଣ ଏବଂ ଦୁର୍ଗାଙ୍କର ଛବି । ସମସ୍ତ ଛବି ଚନ୍ଦନ ଓ ପୁଷ୍ପରେ ସଜ୍ଜିତ । ଭୋଳା ଦୁରୀ ପକାଇ ଲାଗିଥାଏ)

ମଧୁ (ପ୍ରବେଶ କରି) ପୂଜାରୀ !

ଭୋଳା (ତଳକୁ ମୁହଁ କରି) ଆ-ଆ-ଆସନ୍ତୁ ଆଜ୍ଞା (ମଧୁ ହସି ଦ୍ୱାପି ଦେଲା) (ଭୋଳା ମୁହଁ ଟେକି) ହଇରେ ତୁ ତୁ ମଧୁଟା ? ହାଃ - ହାଃ - ମୁଁ-ମୁଁ-ମୁଁ ଭାବିଲି .... ଫୁ-ଫୁ-ଫୁଲ ଆଣିଛୁ ?

ମଧୁ : ହଁ, ଆଣିଛି (ଦୁହେଁ ଭିତରିକୁ ଚାଲିଗଲେ) ।

(ମଞ୍ଜୁ ଧୂପକାଠି ଜଳାଇ ଆଣି ମା'ଙ୍କ ପାଖରେ ରଖିଲା । ଘର ସାରା ସୁରଭିତ ହୋଇ ଉଠିଲା । ମଞ୍ଜୁ ଆଖି ବୁଜି ପ୍ରଣାମ କରିବା ସମୟରେ ମହେଶର ପ୍ରବେଶ । ସେ ମଧ ଖଣ୍ଡେ ଦୂରରୁ ଆଖି ବୁଜି ପ୍ରଣାମ କଲା । ମଞ୍ଜୁ ପ୍ରଣାମ ସାରି ଫେରି ଚାହିଁ ଦେଖିଲା ମହେଶକୁ । ମୁହଁ ବୁଲାଇ ଅଳ୍ପ ହସି ଫୁଲ ସଜାଡ଼ି ଲାଗିଲା । ମହେଶ ଆଖି ଖୋଲି ନୀରବରେ ଫୋଟୋ ପାଖକୁ ଆସି ଲକ୍ଷ୍ୟ କରିବାକୁ ଲାଗିଲା - ଶ୍ୱେତ ପଦ୍ମ ଉପରେ ଥିବା ମା'ଙ୍କ ଫୋଟୋ ଆଡ଼କୁ ।

ମଞ୍ଜୁ : କଣ ଏତେ ତନ୍ମୟ ହୋଇ ଦେଖୁଛ ?

ମହେଶ : ହଁ ମଞ୍ଜୁ । ଆଶ୍ଚର୍ଯ୍ୟ ! ମୁଁ ଦେଖୁଛି - ସେହି ମୂର୍ତ୍ତି ଆଉ ଏହି ମୂର୍ତ୍ତି ଭିତରେ କିଛି ପ୍ରଭେଦ ନାହିଁ !

ମଞ୍ଜୁ : ସତରେ ?

ମହେଶ : ମୂର୍ତ୍ତି କହିଲେ ଭୁଲ୍ ହେବ, ତେବେ ସେଦିନ ଯେଉଁ ଶ୍ୱେତ ବସ୍ତ୍ର ପରିହିତା ବୁଢ଼ୀକୁ ଦେଖିଥିଲି, ଏଇ ତ ତାଙ୍କରି ଛବି !

ମଞ୍ଜୁ : ସେ ପରା ତୁମ ପାଖେ ପାଖେ ଅଛନ୍ତି । ତୁମେ ବିଶ୍ୱାସ କରିପାର - ନ କରି ପାର !, ସେ ତୁମକୁ ଫେରାଇ ଆଣିଛନ୍ତି - ତାଙ୍କରି ପାଖକୁ । ସେ ପରା ଜଗତ୍ ଜନନୀ ମା !

ମହେଶ : ତମେ ଠିକ୍ କହିଛ ମଞ୍ଜୁ । ମୁଁ ଆଜିଠୁ ଅନୁଭୂତିରୁ ଅନେକ କିଛି ବିଶ୍ୱାସ କରିବାକୁ ପ୍ରସ୍ତୁତ ଅଛି । ତୁମରି ଲୁହ, ତୁମରି ମିନତି, ବ୍ୟର୍ଥ ହୋଇ ନାହିଁ ।

ମଞ୍ଜୁ : ଆଜି ମୋର ବଡ଼ ଭାଗ୍ୟ !

ମହେଶ : (ହସି) ବରଂ ମୁଁ କହିବି ମୋର ଭାଗ୍ୟ । ତୁମ ପରି ଏକ ଧର୍ମଶୀଳା, ଗୁଣବତୀ ପତ୍ନୀକୁ ମୁଁ ବୁଝି ପାରିଛି । ମୁଁ ଯେ ଆଜି ବଞ୍ଚି ପାରିଛି ଏ ମା'ଙ୍କ ଆଶୀର୍ବାଦ ଓ ତୁମର ନିଷ୍ଠା ଯୋଗୁଁ । (ମଞ୍ଜୁ ପ୍ରତିବାଦ କରିବାକୁ ଯାଉଥିବା ସମୟରେ ପଶି ଆସିଲେ ଡାକ୍ତର ମହାନ୍ତି, ମହେନ୍ଦ୍ରବାବୁ ଓ ଏସ୍.ଆଇ.)

ଡଃ ମହାନ୍ତି : (କହି କହି ଆସୁଥିଲେ) ତାହା ହିଁ ତ ବଡ଼ ଆଶ୍ଚର୍ଯ୍ୟର କଥା । ମୁଁ କହୁଛି - ଏସବୁ ମନୁଷ୍ୟକୃତ ନୁହେଁ । ଆରେ ମହେଶବାବୁ ! (ମହେଶ ଓ ମଞ୍ଜୁ ସମସ୍ତଙ୍କୁ ନମସ୍କାର କଲେ) ମୁଁ ଆପଣଙ୍କ ଦେହ ବିଷୟରେ କହୁଥିଲି ।

ଏସ୍.ଆଇ. : ମୋହନ ଭଳି ଦେଶଦ୍ରୋହୀକୁ ଧରି ପାରିଲେ କିପରି ? ସରକାରୀ ମହଲରେ ମହେଶଙ୍କ କଥା ଚର୍ଚ୍ଚା ଚାଲିଛି । ବାସ୍ତବିକ୍, ଶୁଣିଲେ ଭାରି ଆଶ୍ଚର୍ଯ୍ୟ ଲାଗେ । ପ୍ରକୃତ ଘଟଣାଟା କଣ ହେଲା କୁହନ୍ତୁ ତ ଡଃ ମହାନ୍ତି ?

ଡଃ ମହାନ୍ତି : ନର୍ସ କହିବା ମାତ୍ରେ ଆମର ବିଶ୍ୱାସ ହେଲା ମଞ୍ଜୁ ଦେବୀ କିଛି ଗୋଟାଏ ଭୁଲ୍ କାମ କରୁଛନ୍ତି । (ମଞ୍ଜୁ ଉଦ୍ଦେଶ୍ୟରେ) କ୍ଷମା କରିବେ, ମଞ୍ଜୁ ଦେବୀ ! ମୁଁ ସେତେବେଳେ ଆପଣଙ୍କୁ ସନ୍ଦେହ କରୁଥିଲି । ତା'ପରେ ନର୍ସ ପ୍ରଭୃତି ଯାଇ କବାଟ ବାଡ଼େଇଲେ । କୌଣସି ଉତ୍ତର ନ ପାଇ ବାଧ୍ୟ ହୋଇ ସେଖାଲ ଚାପରେ କବାଟ ଭାଙ୍ଗିବାକୁ ପଡ଼ିଲା । କୋଠରୀରେ ଆସି ଯାହା ଦେଖିଲୁ - ବଡ଼ ଅଦ୍‌ଭୁତ କଥା ! ସେ ପର୍ଯ୍ୟନ୍ତ ମହେଶ ବାବୁଙ୍କ ଉପରେ ଖେଳି ବୁଲୁଥାଏ ଏକ ଉଜ୍ଜ୍ୱଳ ଶୁଭ୍ର ଆଲୋକ । ଘର ଭିତରେ ଏକ ସୁନ୍ଦର ମହକ । ମଞ୍ଜୁ ଦେବୀ ପଡ଼ିଥାନ୍ତି ମା'ଙ୍କ ଫୋଟୋ ତଳେ । ମହେଶ ବାବୁଙ୍କର ନାଡ଼ୀର ଗତି ଦେଖିଲି, ସୁସ୍ଥ ଶରୀର ପରି ଚଞ୍ଚଳ ! ମୁଁ ତ ଅବାକ୍ ହୋଇଗଲି । ଏହା କିପରି ସମ୍ଭବ ହେଲା ?

ଏସ୍.ଆଇ. : ଡଃ ସ୍ମିଥ୍ କଣ କହିଲେ ?

ମହେନ୍ଦ୍ରବାବୁ : ସେ ତ ଏ ପର୍ଯ୍ୟନ୍ତ କୌଣସି ବୈଜ୍ଞାନିକ କାରଣ ଖୋଜି ପାଇ ନାହାନ୍ତି । ସେ ମାନୁଛନ୍ତି ଆମର ସମସ୍ତ ଚେଷ୍ଟା ବିଫଳ ହୋଇଥିଲା । ସେଥିପାଇଁ ମୁଁ କହେ ଏସବୁ ମନୁଷ୍ୟକୃତ ନୁହେଁ । ସେହି ମା'ଙ୍କର କରୁଣା ଆଉ ମଞ୍ଜୁର ତ୍ୟାଗ ଓ ନିଷ୍ଠା ଯୋଗୁଁ ସମ୍ଭବ ହେଲା ।

ଏସ୍.ଆଇ. : ନିଶ୍ଚୟ !

ଡଃ ମହେନ୍ଦ୍ର : କିନ୍ତୁ ଏ ସମ୍ପର୍କରେ ମୋର ଏଭଳି ଏକ ଆଶା ଥିଲା । ମୁଁ ଭାବିଥିଲି ଯେତେବେଳେ ନିଜର ସମସ୍ତ ମା'ଙ୍କ ପାଖରେ ସମର୍ପଣ କରି ସାରିଛି, ସେଇଠି ଅମଙ୍ଗଳ ଘଟିବା ଅସମ୍ଭବ ।

ମହେଶ : ଆଉ ସେଥିପାଇଁ ମା' ନିଜେ ଆସି ମୋ ଭଳି ଉଡ଼ିବୁଲା ଜନ୍ତୁଟିକୁ ଧରି ବାନ୍ଧି ଆସ୍ତିକ କରି ବାକୁ ଚାହିଁଲେ । (ସମସ୍ତେ ହସିବା ଓ ଆସନ ଗ୍ରହଣ କରିବା)

(ମମତା ବିବାହିତା) ମୁଣ୍ଡରେ ସିନ୍ଦୁର - ନବବଧୂ ବେଶରେ ମନୋଜଙ୍କ ସହିତ ଆସି ପ୍ରଣାମ କରିବା । ଏ ସମୟରେ ମେନକା ଓ ମଣିଦେଈ ଆସିଲେ ।)

ମେନକା : ହେଇ ସମସ୍ତେ ତ ଆସି ଗଲେଣି । ଆମ ସାହିରୁ ଏ ଚମ୍ପା ଫୁଲ ହାର ଆଣିଛି । ନେ ବୋହୂ, ମା'ଙ୍କୁ ଭଲ କରି ସଜାଇ ଦେ । ମା' ଯିଏ ଦୁର୍ଗା ସିଏ । ତାଙ୍କରି କରୁଣା ନ ଥିଲେ ମୁଁ କଣ ସତେ ମୋ ମହୀକି ଆଜି ପାଇ ଥାନ୍ତି? (ଆଖି ଛଳ ଛଳ ହେବା)

ମମତା : ପ୍ରଣାମ କରି (ମଞ୍ଜୁ ପାଖରେ ବସି) ଦେଖିଲ ଭାଉଜ, ମୁଁ କଣ କହୁଥିଲି ? ମାଉସୀ ନିଶ୍ଚୟ ଦିନେ ମା'ଙ୍କୁ ଡାକିବେ । (ଭୋଳା ଶ୍ୱେତ ଗୋଲାପ ଓ ଚମ୍ପା ଫୁଲ ନେଇ ଆସିଲା । ମଞ୍ଜୁ ଓ ମମତା ସଜାଡ଼ି ଦେଲେ ।)

ମହେନ୍ଦ୍ରବାବୁ : ମା' ଏ ଚମ୍ପା ଫୁଲର ଭାରି ପ୍ରଶଂସା କରିଛନ୍ତି ।

ଡଃ ମହାନ୍ତି, ଏସ୍.ଆଇ. : କାହିଁକି ?

ମହେନ୍ଦ୍ରବାବୁ : ତାର ପାଞ୍ଚଟି ପାଖୁଡ଼ାରେ ପାଞ୍ଚଟି ସନ୍ତକ । ଭକ୍ତି, ଅଭୀପ୍ସା, ବିଶ୍ୱାସ, ନିଷ୍ଠା ଏବଂ ଆତ୍ମସମର୍ପଣ ।

ଭୋଳା : ମାଁ - ମା ତ ସେଥିଲାଗି ଖୋଜି ଖୋଜି ଆଣିଛନ୍ତି । (ସମସ୍ତଙ୍କ ମୁହଁରେ ହସ)

ମଞ୍ଜୁ : ବର୍ତ୍ତମାନ ସମୟ ହୋଇଗଲା । ପ୍ରାର୍ଥନା କରିବା ଏଥର । (ମଞ୍ଜୁ ଓ ମମତାର ପ୍ରାର୍ଥନା । (ମୀରା ମୀରାମ୍ବିକେ ..... ଭଜନ ଓ ଅର୍ଗାନ୍ ବାଜିବା ପରେ ସମସ୍ତେ ଧ୍ୟାନସ୍ଥ ।)

## ପଞ୍ଚମ ଦୃଶ୍ୟ

(ଆଲୋକ ଜଳିବା ପରେ ଦେଖାଗଲା ପାଠଚକ୍ର ଚାଲିଛି, ସମସ୍ତେ ଧ୍ୟାନମଗ୍ନ । ଏ ସମୟରେ ୫୦ ବର୍ଷ ବୟସ୍କ ଦିବାକର ବାବୁ ୬୦ ବର୍ଷ ବୟସ୍କ ଏକ ବୃଦ୍ଧାଙ୍କୁ ଧରି ପ୍ରବେଶ କଲେ ଓ ଉଭୟେ ବସିଲେ । ଧ୍ୟାନ ସରିବା ପରେ ମଞ୍ଜୁ ଉଠି ଦିବାକର ବାବୁଙ୍କୁ ପ୍ରଣାମ କଲା ।)

ମଞ୍ଜୁ : କକେଇ, ଆପଣ ? ଏତେ ଦିନ ପରେ ଆସିଲେ, ଏହା ଭିତରେ କେତେ କଥା ଘଟିଗଲା ।

ଦିବାକର : ହଁ ମା, ମୁଁ ସବୁ ଶୁଣିଛି ! ମୋ ଦେହଟା ଟିକିଏ ଅସୁସ୍ଥ ଥିବାରୁ ମୁଁ ଆସି ପାରିଲି ନାହିଁ । ମହେଶ ବାବୁ ଭଲ ଅଛନ୍ତି ତ ?

ମଞ୍ଜୁ : ମା'ଙ୍କ ଦୟାରୁ ତାଙ୍କୁ ଫେରି ପାଇଲି ।

ଦିବାକର : ବର୍ତ୍ତମାନ ମା'ଙ୍କ ଅସୀମ କୃପାରୁ କିଭଳି ଏକ ଅମୂଲ୍ୟ ଜିନିଷକୁ ତତେ ଫେରାଇ ଦେବାକୁ ଆସିଛି, ତୁ ଜାଣି ପାରିବୁ ନି ।

ମଞ୍ଜୁ : ଅମୂଲ୍ୟ ଜିନିଷ !

ଦିବାକର : ହଁ, ଭାଉଜ (ବୁଢୀ ଉଦ୍ଦେଶ୍ୟରେ) ଆସ ଦେଖ, ଏ କିଏ ?

ମଞ୍ଜୁ : କକେଇ ? ଏ ମାଉସୀ କଣ ତୁମ ଭାଉଜ ? ଏ ତ ଥରେ ବର୍ଷାରେ ମୋ ଘରକୁ ଆସି ଥିଲେ ? ସେ ତ ଭି-ଭି-ଭିକାରୁଣୀ ?

ଦିବାକର : ଏଁ, ନାଁ ମା । ସେ ଆଉ ଭିକାରୁଣୀ ହୋଇ ରହି ନାହାନ୍ତି । ସେ ମୋ ବଡ଼ ଭାଉଜ, ଯାହାକୁ ବହୁ ବର୍ଷ ଧରି ଖୋଜି ଖୋଜି ବର୍ତ୍ତମାନ ପାଇଲି । ଆଉ ସେ ପୁଣି କିଏ ଜାଣୁ ? ସିଏ ତୋର ଛିନ୍ନିତ ବୋଉ । ମୋର ଭାଉଜ । (ବୁଢ଼ୀ ଉଦ୍ଦେଶ୍ୟରେ) ଦେଖ ଭାଉଜ, ମା'ଙ୍କ ଦୟାରୁ ତୁମେ ତୁମରି ଝିଅକୁ ଫେରି ପାଇଲ । ହେଇ ତୁମ ଝିଅ ମଞ୍ଜୁ ।

ମଞ୍ଜୁ : ଇଏ କଣ ! ଏ ମୋ ବୋଉ ? (ଆଶ୍ଚର୍ଯ୍ୟ ହୋଇ)

ବୁଢ଼ୀ : ମିନି ! ମୋ ପ୍ରାଣର ମିନି - ମଞ୍ଜୁ କାହିଁ ? କାହିଁ ମୁଁ କିଛି ଦେଖି ପାରୁନି । ଦେଖି ପାରୁନି ।

ମଞ୍ଜୁ : ବୋଉ, ବୋଉ ! (ଧାଇଁ ଯାଇ କୁଣ୍ଢାଇ ପକାଇବା ! ଉଭୟେ କାନ୍ଦି ପକାଇଲେ ।)

ବୁଢ଼ୀ : ହେ ମା ! ସତେ କଣ ଏ ପ୍ରାଣ ବଞ୍ଚିଥିଲା ତତେ ଦେଖିବା ପାଇଁ ? ତତେ ପାଇବି ବୋଲି ମୋର ବିଶ୍ୱାସ ନ ଥିଲା ମା ! (ଥର ଥର ହାତରେ ଆଉଁସିବା)

ଦିବାକର : ହଁ ଭାଉଜ, ମଞ୍ଜୁ ବୋଉ ବୋଉ ବୋଲି ତୁମକୁ ପିଲାଦିନରୁ କେତେ ଖୋଜିଛି । କେତେ କାନ୍ଦିଛି । କିନ୍ତୁ ତୁମକୁ ସେ ପାଇନି । ଆଜି ମା'ଙ୍କ ଦୟାରୁ ପୁଣି ଫେରି ପାଇଛି । ଧନ୍ୟ ସେ କୃପାମୟୀ !

ମଞ୍ଜୁ : ମୁଁ କଣ ଦେଖୁଛି ! ଏ ମୋର ବୋଉ ! ଆହେ ଶୁଣୁଛ ? ମୋ ବୋଉ ଆସିଛି ! କେତେ ଦିନ ପରେ ମୁଁ ବୋଉକୁ ଫେରି ପାଇଲି । (ବୁଢ଼ୀକୁ ଆଣି ମହେଶଙ୍କୁ ଦେଖାଇବା)

ମହେଶ : (ଭଲ ରୂପେ ଚାହିଁବା) ତୁମ ବୋଉ ? ଏହାଙ୍କୁ କେଉଁଠି ଦେଖିଛି ବୋଧେ ।

ମଞ୍ଜୁ : ହଁ ଆମ ଘରେ । ଝଡ଼ ବର୍ଷାରେ ସେ ଆସିଥିଲା । ତୁମେ ତାକୁ ଭିକାରୁଣୀ କହି ତଡ଼ି ଦେଇଥିଲ ?

ମହେଶ : ଆରେ ହଁ ତ ? ତମ ବୋଉ ? (କକେଇଙ୍କୁ ଚାହିଁ) କକେଇ ? ଆପଣ ? କେତେବେଳେ ଆସିଲେ ? ନମସ୍କାର । ଆଚ୍ଛା, ଏ ମଞ୍ଜୁର ବୋଉ ?

ଦିବାକର : ହଁ ମହେଶ ବାବୁ ! ସେ ମଞ୍ଜୁର ବୋଉ । ମୋର ବଡ଼ ଭାଉଜ । ସେଦିନ କରାଳ ବତାସ ଝଡ଼ରେ ନଈ ବଢି ମାଡ଼ି ଆସିଲା । ଘରଦ୍ୱାର, ଗାଈଗୋରୁ ସବୁ ଭାସି ଗଲେ । କିଏ କୁଆଡ଼େ ଭାସି ଚାଲିଗଲେ - କେତେ ଖୋଜିଲି - ଭାଉଜ ଭିମ୍ନା ପୁଅ ମନୁକୁ ଆଉ ପାଇଲି ନାହିଁ । ବରଗଛ ଓହଳ ଧରି ପାଞ୍ଚ ଦିନ କାଳ ବଞ୍ଚି ରହିଥିଲା ମିନି - ତମର ମଞ୍ଜୁ - ସେ ମୋ ପାଖରେ ମଣିଷ ହୋଇ ଆପଣଙ୍କୁ ବିବାହ କରିଛି ।

ମହେଶ : ସତରେ ! ନମସ୍କାର ବୋଉ । ମତେ କ୍ଷମା କରନ୍ତୁ ।

ଦିବାକର : ଭାଉଜ । ଏ ତୁମ ଜୋଇଁ - ମହେଶ ବାବୁ ।

ବୃଦ୍ଧା : କାଇଁ, କେଉଁଠି ? ହେ ଦୀନବନ୍ଧୁ ! ତମେ ଆଜି ମୋ ଝିଅ ଓ ମୋ ଜୋଇଁଙ୍କୁ ଫେରେଇ ଦେଇଛ । ମା' କୃପାମୟୀ ମୋ ଝିଅକୁ ଫେରାଇ ଦେଇଛନ୍ତି ! କିନ୍ତୁ ମୋ ପୁଅ ମନୁ ... । (କାନ୍ଦିବା)

ଦିବାକର : ଛି ଭାଉଜ, କାନ୍ଦନି । ଶ୍ରୀମାଙ୍କୁ ବିଶ୍ୱାସ ରଖ । ସେ ତୁମ ମନୁକୁ ନିଶ୍ଚୟ ଫେରାଇ ଦେବେ ।

ବୃଦ୍ଧା : ମୁଁ ତାକୁ ଡାକ୍ତର କରିବି ଭାବିଥିଲି । ସାତ ବର୍ଷର ପୁଅ ନଈ ବଢିରେ କେଉଁଆଡ଼େ ଭାସିଗଲା । ଆଖି ଫୁଟିଗଲାଣି । ସତରେ କଣ ମୁଁ ତାକୁ ପାଇବି ?

(ମନୋଜ ଓ ମମତା ବସି ସବୁ ଶୁଣୁଥାନ୍ତି । ଏ ସମୟରେ ମନୋଜ ନିଜ ବାମ ହାତକୁ ଚାହିଁଲେ - ଲେଖା ହୋଇଛି 'ମନୁ')

ମନୋଜ (ହଠାତ୍ ଉଠି ଦିବାକର ବାବୁଙ୍କୁ ଟାଣି ନେଇ ନିଜ ହାତକୁ ଦେଖାଇଲେ ।

ଦିବାକର : ମନୁ ! ତୁ କ'ଣ ଆମର ସେ ମନୁ ? ହଁ ହଁ ଠିକ୍ ତ ଏଇ ଚିତା ? ସେଦିନ ଚିତା କୁଟାଳୀ ପାଖରେ ତୁ ହାତ ଦେଖାଇ ଚିତା କୁଟାଇଥିଲୁ । ହାତଟା ଫୁଲି ଯାଇଥିଲା । ଭାଇନା କେତେ ଗାଳି ଦେଇଥିଲେ । ନୁହେଁ ?

ମନୋଜ : ହଁ କକେଇ ! ମୁଁ ତୁମର ସେ ମନୁ, ବୋଉ (ନମସ୍କାର କରି) ବୋଉ । ତୁ ମତେ ଚିହ୍ନି ପାରୁନୁ ମୁଁ ତୋ ପୁଅ ମନୁ । କେତେ ଚତେ ଖୋଜିଛି,

(ବୃଦ୍ଧାଙ୍କୁ କୁଣ୍ଢାଇ) ମିନି ମିନି ... ମଞ୍ଜୁ .... ତୁ ମୋ ଭଉଣୀ ମିନି ?

ମଞ୍ଜୁ : ଭାଇ । ମନୁ ଭାଇ ! (କୁଣ୍ଢାଇ)

ବୃଦ୍ଧା : କାଇଁ କାଇଁ ମୋ ପୁଅ ? ମୁଁ କିଛି ଦେଖିପାରୁନି ! ହେ କୃପାମୟୀ, ମୁଁ କ'ଣ ଶୁଣୁଛି ? ଏ ସପନ ନା ସତ ! (ମନୋଜକୁ କୁଣ୍ଢାଇ ସମସ୍ତଙ୍କ ଆଖିରେ ଆନନ୍ଦାଶ୍ରୁ)

ମନୋଜ (ମହେନ୍ଦ୍ର ବାବୁ ଧ୍ୟାନରୁ ଉଠି ସବୁ ଶୁଣୁଥାନ୍ତି - ଟିକିଏ, ଟିକିଏ ହସି ମା'ଙ୍କୁ କୃତଜ୍ଞତା ଜଣାଉଥାନ୍ତି।)

ମହେନ୍ଦ୍ର : ହଁ ମାଉସୀ - ନମସ୍କାର । ଏ ସବୁ ସତ । ମନୋଜ ତୁମର ପୁଅ ମନୁ । ମୁଁ ତାକୁ ନଈ ବଢିରୁ ପାଇ ପୁଅ ଭଳି ରଖିଛି । ମଞ୍ଜୁ ତା'ର ଏତେ ପାଖରେ ଥାଇ ସେ ଭଉଣୀ ବୋଲି ଚିହ୍ନି ପାରିନି । କେତେ ସେ ଖୋଜିଛି ଆପଣଙ୍କୁ,, ଭଉଣୀ ମିନି ପାଇଁ, କେତେ କାନ୍ଦିଛି । ମା' ଅପାର କରୁଣାମୟୀ - ଆଜି ସମସ୍ତେ ସମସ୍ତଙ୍କୁ ପାଇ ପାରିଛନ୍ତି, ଧନ୍ୟ ତୁମରି ମହିମା !

ମନୋଜ : ବୋଉ ! ବାବା ମତେ ଡାକ୍ତରୀ ପଢାଇଛନ୍ତି । ତୋର ସ୍ୱପ୍ନ ସାର୍ଥକ କରିଛନ୍ତି । ମୁଁ ତାଙ୍କ ପୁଅ ହୋଇଛି ! ଆଉ ତୋର ବୋହୂ ଏଇ ଦେଖ । ମମତା, ମମତା ! ବୋଉକୁ ପ୍ରଣାମ କର ।

ମମତା (ଆଖିରେ ଲୁହ) ବୋଉ ! ବୋଉ ! ମୁଁ ତୁମ ବୋହୂ । ମମତା

ବୃଦ୍ଧା : ବୋହୂ - ବୋହୂ - କାହିଁ କାହିଁ ମା (ଅଣ୍ଡାଳିବା)

ମମତା : ବୋଉ, ତୁମ ପୁଅ ଆଜି ଡାକ୍ତର ହୋଇଛନ୍ତି । ଅପରେସନ୍ କରି ତୁମ ଆଖି ଭଲ କରି ଦେବେ । ବ୍ୟସ୍ତ ହୁଅନି ! ତୁମେ ଆମ ସମସ୍ତଙ୍କୁ ଦେଖି ପାରିବ !

ବୃଦ୍ଧା : ସତରେ ! ଆଜି ମୋର ଭାଗ୍ୟ ! ସତରେ ମୁଁ ସମସ୍ତଙ୍କୁ ଦେଖି ପାରିବି !

ମଞ୍ଜୁ : ହଁ ବୋଉ, ତୁ ଭଲ ହୋଇଯିବୁ ।

ମନୋଜ : ଆଉ ତୁ ତୋର ପୁଅ ବୋହୂ ପାଖରେ ରହିବୁ । ଆମେ ସବୁ ବାବାଙ୍କ ପାଖରେ ରହିବା ।

ମହେନ୍ଦ୍ର : ହଁ ମାଉସୀ। ମନୋଜ ମୋର ପୁଅ। ଗୋଟିଏ ରତ୍ନ। ମୁଁ ଜାଣି ଥିଲି ସେ ନିଶ୍ଚୟ ଏକ କୁଳୀନ ଘରର ପୁଅ। ମା' ଆଜି ସବୁକିଛି ସମାଧାନ କରି ଦେଇଛନ୍ତି।

ମମତା : ଦେଖିଲ ଭାଉଜ ମୁଁ କହି ଥିଲି ଶ୍ରୀମା ଅସୀମ କୃପାମୟୀ! ସେ ହିଁ ବିପଦରୁ ଉଦ୍ଧାର କରିବେ।

ମହେନ୍ଦ୍ର : ଆଉ ସେ କହିଛନ୍ତି - "ମୋ ବାହୁର ଆଶ୍ରୟ ନେ - ମୁଁ ତୋତେ ସବୁ କିଛିରୁ ରକ୍ଷା କରିବି - ମୋ ସହାୟତା ପ୍ରତି ଉନ୍ମୁକ୍ତ ହୁଅ - ତୁ କେବେ ବି ନିରାଶ ହେବୁ ନାହିଁ।"

ମହେଶ : ବାସ୍ତବିକ୍ ମୁଁ ଦେଖୁଛି - ସେ ହେଉଛନ୍ତି ଅପାର କରୁଣାମୟୀ। ମା ଦୁର୍ଗା (ହାତ ଯୋଡ଼ିବା)।

ମହେନ୍ଦ୍ର ହଁ, ସେ ମା' ସେ ଦୁର୍ଗା। ସେ ମାହେଶ୍ୱରୀ, ସେ ଜନନୀ। ସବୁକିଛି ତାଙ୍କରି ମଧୁମୟ ଚରଣ ତଳେ 'ସମର୍ପଣ' କରିଦେଲେ ସେ ସବୁ ବିପଦରୁ ରକ୍ଷା କରନ୍ତି।

(ଏ ସମୟରେ ପଶି ଆସିଛନ୍ତି ମଣି ଦେଇ ଓ ମେନକା)

ମେନକା ନହେଲେ ମୁଁ କ'ଣ ମୋ ମହୀକୁ ଏପରି ଅବସ୍ଥାରେ ଦେଖିଥାନ୍ତି - ସେ ମା', ସେ ଦୁର୍ଗା, ସେ ଜନନୀ। ଆଜି ମଞ୍ଜୁର ସବୁ କଷ୍ଟ ଦୂର ହୋଇଛି। ସେ ବୋଉକୁ, ଭାଇକୁ, ସ୍ୱାମୀକୁ ସମସ୍ତଙ୍କୁ ଫେରି ପାଇଛି।

ମହେନ୍ଦ୍ର ବାବୁ : ଆଜି ଏ ଶୁଭ ମୁହୂର୍ତ୍ତରେ ମା'ଙ୍କ ଚରଣ ତଳେ ସମବେତ ପ୍ରାର୍ଥନା, ସଂଗୀତ ପରିବେଷଣ କରିବା। ସମସ୍ତେ ଧ୍ୟାନସ୍ଥ ରହନ୍ତୁ!

'ଯା ଦେବୀ ସର୍ବ ଭୂତେଷୁ
ମାତୃ ରୂପେଣ ସଂସ୍ଥିତା '
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ

ଓଁ ମାତୃ ମୀରାରବିନ୍ଦଂ ଶରଣ୍ୟଂ ପ୍ରପଦ୍ୟେ .....
ତୁମେ ଜନମି ଥିଲ
କେତେ ବରଷ ତଳେ ଏଇ ଧରାରେ ........
ନିଜେ ବରି ନେଇଛ
ନେବ ମାନବ ଜାତି ସତ ପଥରେ ......
ଆଜି ଏହି ସମାବେଶ ... ମାଗେ ତୁମରି ଆଶିଷ
ମାଗୋ, ବିଶ୍ୱ ଜନନୀ .....
ଆମ ପ୍ରଣାମ ଘେନ .... ବିଶ୍ୱଜନନୀ (୧)

ପଣ୍ଡିଚେରୀର ନୀରବ ସାଧକ ରୂପ ଗୋଟି ମନେ ଧରି
ଧ୍ୟାନ ନିମିଳିତ ନୟନ ଦୁଇଟି , ଆସନ ଉଠିଲା ଥରି,
ଛାଡ଼ି ଜନ୍ମମାଟି ଆସିଲ ଗୋ ଛୁଟି ସୁଦୂର ଭାରତ ଦେଶେ
କଲ ବିଚରଣ ସାଧକ ସହିତେ ଗଭୀର ଅଭିମାନସେ
ଦିବ୍ୟ ଆଲୋକ ଆଣିଲେ ସାଧକେ ଏ ଧରା ତଳକୁ ବୋହି ......
ଚହଳ ଶୁଭିଲା ଗଗନେ ପବନେ -
କ୍ଷିତି ହେବ ସ୍ୱର୍ଗ, ମଣିଷ ଦେବତା
ଭୟ ନାହିଁ, ଭୟ ନାହିଁ
ବିଶ୍ୱମାନବ ...! ବଜ୍ର ନିର୍ଘୋଷ ପଣ୍ଡିଚେରୀର ବାଣୀ
ଆମ ପ୍ରଣାମ ଘେନ ବିଶ୍ୱଜନନୀ (୨)

ଆଜି ଏ ମଣିଷ ନିମ୍ନ ମାନସ ପର୍ଯ୍ୟାୟେ ଅଛି ରହି,
ମଣିଷ ଭିତରେ ଭାବର ବିଭେଦ କୁହୁଡ଼ି ଯାଇଛି ଛାଇ,
ଭୋକ, ରୋଗ, ଶୋକ, ଅଭାବ, ବେଦନା, ପ୍ରାଣ ହୁଏ ଛଟପଟ,
ଅଜ୍ଞାନ ତମସା ଘେରିଛି, ମଣିଷ ପାଉନାହିଁ ଖୋଜି ବାଟ,
ସାଗର ବକ୍ଷୁ, ଚିର ଭାସ୍ୱର ଦିବ୍ୟ ଜ୍ୟୋତି ନେଇ -
ଶୂନ୍ୟେ ରହିଛ ହସ୍ତ ପ୍ରସାରି
ଭ୍ରାନ୍ତ ପଥିକେ ଆଶ୍ୱାସନା ଦେଇ -
ଭୟ ନାହିଁ ... ଭୟ ନାହିଁ ...
ବିଶ୍ୱମାନବ ! ବଜ୍ର ନିର୍ଘୋଷ ପଣ୍ଡିଚେରୀର ବାଣୀ
ଆମ ପ୍ରଣାମ ଘେନ ... ବିଶ୍ୱଜନନୀ ... ଜନନୀ... ଜନନୀ । (୩)

(ସମସ୍ତେ ପ୍ରଣାମ କରିବା ସମୟରେ ମଞ୍ଚ ଅନ୍ଧକାର)



## ଏକ ଜନ୍ମଦିନ ବାର୍ତ୍ତା

ନବଜନ୍ମ ତୋ ହୃଦୟରେ ପ୍ରକାଶିତ ହେଉ, ଶାନ୍ତି ଓ ଆନନ୍ଦର ମଧ୍ୟରେ ତାହା ନିଜର ଜ୍ୟୋତି ବିକୀର୍ଣ୍ଣ କରୁ, ତୋ ସତ୍ତାର ସକଳ ଅଂଶକୁ ତୋ ମନ, ଦୃଷ୍ଟି, ସଙ୍କଳ୍ପ, ହୃଦୟ, ପ୍ରାଣ ଓ ଶରୀରକୁ ତାହା ନିଜ ମଧ୍ୟରେ ଧାରଣ କରୁ । ତୋ ଜୀବନର ପ୍ରତ୍ୟେକଟି ଦିନ ହଉ ତା'ର ବୃଦ୍ଧି, ତା'ର ବୃହତ୍ତର ପୂର୍ଣ୍ଣତାର ଦିନ ଯେ ପର୍ଯ୍ୟନ୍ତ ତୋ ସତ୍ତାର ସମସ୍ତ ଅଙ୍ଗ ମା'ଙ୍କର ସନ୍ତାନ ନ ହୋଇଛି ! ସେହି ଜ୍ୟୋତି, ସେହି ଶକ୍ତି ଏବଂ ସେହି ସାନ୍ନିଧ୍ୟ ତୋତେ ଚତୁର୍ଦ୍ଦିଗରେ ଘେରି ରହୁ, ତୋତେ ରକ୍ଷା କରୁ, ପାଳନ କରୁ ଏବଂ ପୋଷଣ କରୁ, ଯେତେଦିନ ପର୍ଯ୍ୟନ୍ତ ତୋର ବାହ୍ୟ ଓ ଆନ୍ତର ଜୀବନ ନ ହୋଇଛି ଏକ ଅଖଣ୍ଡ ଗତିଧାରା, ସେହି ଶାନ୍ତି, ଶକ୍ତି ଓ ଆନନ୍ଦର ପ୍ରକାଶ !

- ଶ୍ରୀଅରବିନ୍ଦ

